# ଭ୍ରମରବର ପାଲା ।



ଜୟ ଜୟ ନାରାୟଣ କ୍ଷୀରସିନ୍ଧୁ ବାସୀ । ଅନନ୍ତ ଅଙ୍କ ବିହାରୀ କମଳା-ବିଳାସୀ । ତୁମ୍ଭ କୃପାବଳେ ଅଭଯାଉ ଭଜନ୍ତୁର । ଚରାଚର ନୟନାନ୍ଦ ଚନ୍ଦ୍ର ଦିବାକର । ଏମନ୍ତ ପ୍ରଭୁ ଚରଣ ସଦା କରି ଧ୍ୟାନ । ଶ୍ରୀ ଭ୍ରମ-ରବର ପାଲା କରଇ ଲିଖନ । ଶୁଣ ସର୍ବ ସଜ୍ଜନେ ହୋଇ ଏକ ମନ । ଯାହାଙ୍କୁ ଚିନ୍ତିଲେ ଫଳେ ହେବ ସର୍ବକାମ । ଏମନ୍ତ ଯେ ସତ୍ୟନାରାୟଣ ଅଶେଷ କରି । ଭ୍ରମରବର ପାଲାଟି କହିବି ବିସ୍ତାରି । ମାଣିକ୍ୟ ପଦ୍ମରେ ବସେ ରାଜା ସନାତନ । ହାତୀ ଘୋଡ଼ା ସୀମା-ନାହିଁ ଅମୂଲ୍ୟ ରତନ । ମନ୍ତ୍ରୀ ନାମ ଗୁଣାକର ଅଟେ ଆଜ୍ଞାକାରୀ । ରାମ ମନ୍ତ୍ରୀ ଜାମ୍ବବ ଯେ ତାକୁ ନୋହେ ସରି । ସହଦେବ ପ୍ରାୟେ ମନ୍ତ୍ରୀ ଅଟଇ ଯେ ସେହୁ । ସ୍ୱର୍ଗ କଥା ଜାଣଇ ଯେ ମର୍ତ୍ତ୍ୟପୁରେ ରହୁ । ଅନେକ ସମ୍ପତ୍ତି ଅଛି ରାଜାଙ୍କ ନଗରେ । ନ ଥିବ ଏପରି ଧନ କୁବେର ଭଣ୍ଡାରେ । ବଳବନ୍ତେ ସେଣେ ଅଟେ ଅର୍ଜୁନ ସମାନ । ସତ୍ୟବନ୍ତେ ସେହି ହେବ ଧର୍ମଙ୍କ ନନ୍ଦନ । କର୍ଣ୍ଣର ସମାନ ଦାତା ଅଟଇ ଯେ ସେହୁ । ବ୍ରାହ୍ମଣ ବୈଷ୍ଣବଠାରେ ଦୟା ରଖିଥାଇ । ମାଘମାସ କୃଷ୍ଣପକ୍ଷ ସପତମୀ ଦିନ । ଛତ୍ରବର୍ଷ ପିତୃଶ୍ରାଦ୍ଧ ଦିଅଇ ରାଜନ । ସେହିଦିନ ବେଳ ଦୁଇଦଣ୍ଡ ସମୟରେ । ପିତୃଶ୍ରାଦ୍ଧ କଥା ଭାବ ପଡ଼ିଲା ମନରେ । ଆଜ ପିତୃଲୋକ-ଙ୍କର ଶ୍ରାଦ୍ଧ ମୋ ଅଟଇ । ଏ କଥା ମୁଁ ପାଶୋରିଲି କପା ଭୋଳ ହୋଇ । କି ବୋଲି ବୋଲିବେ ମୋତେ ଜଗତର ଜନ । ମହତ ସବୁ ଫେରିଗଲେ ଯା ବ୍ରାହ୍ମଣ । ଶିରେ ହାତ ମାରି ରାଜା ପଡ଼ିଲା ଭୂମିରେ । ରୋଦନ କରଇ ଉଚ୍ଚେ ଡାକି ବାରେ ବାରେ । ରାଣୀ-ହଂସ ପୁରଯାକ ପୂରିଲା ଚହଳେ । ରୋଦନ କଲେ ହୃଦ ଫୁଟାଇ ବହଳେ । କେ ବୋଲଇ କହିଲି ମଶୋହର ବେଳ । କେ ବୋଲଇ ମୋତେ ରଖ ପ୍ରଭୁ ଅଦ୍ଭୁତ । କେ ବୋଲଇ ରଖ ମୋତେ ବୈଷ୍ଣବ ଦେବତା ।

Digitized by PPRACHIN, SOA

ରାଜା କାନ୍ଦୁଛନ୍ତି କାର କାଟିବେଟି ମଥା । ଏହିକାଳେ ମେଳାଗଲେ ଗୁଣାକର ମନ୍ତ୍ରୀ । ଶିରେ ହାତ ଦେଇ ରାଜା ବସି କାନ୍ଦୁଛନ୍ତି । କରଯୋଡ଼ି ମନ୍ତ୍ରୀ ଯହୁଁ କାରଣ ପୁଚ୍ଛିଲେ । ଶୋକ ଛାଡ଼ି ମହାରାଜା ମନ୍ତ୍ରୀଙ୍କି କହିଲେ । ଆଜ ପିତୃଶ୍ରାଦ୍ଧ ମୋର ବିଫଳରେ ଗଲା । ଏ ପାପୀ ଜୀବନ ମନ୍ତ୍ରୀ କପାଁଇ ରହିଲା । ଏତେ ବୋଲି ରାଜା ବସି କାନ୍ଦେ ଦନ ଦନ । ଦେଶ ମୋ ଦରିଦ୍ରାଇବରେ ଅନ୍ତ ହେବେ ଧନା । ଶୁଣିକରି ମନ୍ତ୍ରୀ ତହୁଁ ଧୀରେ ଧୀରେ ଗଲା । ଖୁଣ୍ଟି ଭାଲି ପଠାଇଣ କିଛି ନ ପାଇଲା । କୁବେର ସମାନ ରାଜା ଘରେ ଧନ ଥାଇ । ସବୁ ହାତ ନେଲେ ତାହା ପଞ୍ଚାଶ ତୋପାଇଁ । ନ ପାଇଣ ଧନ ମନ୍ତ୍ରୀ କାତର ମନ । ନୃପଙ୍କୁ ବୋଲେ ମହିମା କିଛି ନାହିଁ ଧନ । ଶୁଣିକର ମହାରାଜା ମୂର୍ଚ୍ଛିତ ହୋଇଲେ । କର ଯୋଡ଼ି ଗୁଣାକର ମନ୍ତ୍ରୀ ଜଣାଇଲା । ମାଣିକ୍ୟ ସହରେ ଅଛି ଧନ ସୌଦାଗର । ମହାଜନ ହୋଇଣ କରୁଛି କାରବାର । କହିଲ କହିଣ ଯେ ଗରଜ ମେଣ୍ଟାଇବା । ଗରଜ ମେଣ୍ଟିଲେ ତାଙ୍କୁ ମାଗିକେ ସୁଝିବା । ଶୁଣି ମନମତ କଲେ ରାଜା ସନାତନ । ମାଣିକ୍ୟ ସହର ଯିବା କହିବା ଲାଗିନ । ଏହା ଶୁଣି ମନ୍ତ୍ରୀ ତହୁଁ ଧୀରେ ଧୀରେ ଗଲେ । କଲମ କାଗଜ ଗଣ୍ଡେ ଅଣ୍ଟରେ ଯାକିଲା । ପ୍ରବେଶ ହୋଇଲା ଧନୀ ସୌଦାଗର ଦ୍ୱାରେ । ଛତ୍ରୁରମ ଭରଚଲେ ରତ୍ନ ମଞ୍ଚପୀଠରେ । ଶୁଣ ସବୁ ସଜ୍ଜନେ ପୀରଙ୍କ କାହାଣୀ । ଧନୀ ସୌଦାଗର ଦ୍ୱାରେ ମନ୍ତ୍ରୀ ମିଳନ୍ତି ପୁଣି । ମନ୍ତ୍ରୀଙ୍କି ଦେଖିଣ ସାଧ କରଇ ଦରବାର । ଏତ ରାଜା ମନ୍ତ୍ରୀ କାହିଁ ଆଇଲା ମୋ ପୁର । ମାଗିବା କମନ୍ତେ କିଛି ଆସିଅଛି ଧାଇଁ । ସନାତନ ରାଜା ମୃତ୍ୟୁ ଦେଉଛନ୍ତି ପଠାଇ । ବଧ ବୋଲି କିଏ ଶୁଣେ ନଇଲା ଉତ୍ତର । ହସ୍ତରୁ ଖସି ପଡ଼ିଲା ଲେଖନ ପତ୍ର । ଉଭା ହୋଇ ରହିଅଛି ଗୁଣାକର ମନ୍ତ୍ରୀ । ଦେଖିକର ବୁଢ଼ାକୁ ଯେ ନ ସ୍ପର୍ଶଇ କିଛି । ଘୋଷକ ହୋଇ ରାଜ୍ୟରେ ଯେ ଅଟେ ମହାଜନ । ଧନ ରଖିଅଛି ବୁଢ଼ା କୁବେର ସମାନ ॥ ଅଟେ ଗୁଣାକର ମନ୍ତ୍ରୀ ଠିଆ ହୋଇଥିଲା । ସଉଦାଗରଙ୍କୁ ସବୁ ବୁଝାଇ କହିଲା ।

Digitized by PPRACHIN, SOA

ପାଞ୍ଚ ସସ୍ର ଟଙ୍କା ପାଇଁ ଆସିଅଛୁ ମୁଁ ଧାଇଁ । ସନାତନ ରାଜା ମୋତେ ଦେଇଛନ୍ତି ପଠାଇ ପାଞ୍ଚସସ୍ର ଟଙ୍କା ମୋତେ ଦିଅ ସୌଦାଗର । ଜାମିନରେ ଲେଖିଦେବ ମାଣିକ୍ୟ ସହର । ମାଣିକ୍ୟସହର ଯେହ୍ନେ ଜାମିନ ଶୁଣିଲା । ପାଞ୍ଚସସ୍ର ଟଙ୍କା ଦେବ ସନମତ ହେଲା । ମନ୍ତ୍ରୀ ହାତ ଧରି ଗଲା ମହଲା ଭିତର । ସିନ୍ଦୁକ ଦେଖିଲା ଅଛି ହଜାରୁ ହଜାର । ଆପଣା ହାତରେ ବୁଢ଼ା କଞ୍ଚି ଦେଇଗଲା । ତାଲା ଫିଟାଇଣ ଟଙ୍କା ବାହାର ସେ କଲା । ପାଞ୍ଚ ହଜାର ଟଙ୍କା ସେ ଯତ୍ନେ ଗଣି ଦେଲା । ତୋଡ଼ିଏ ସିନ୍ଦୁକ ତାର ଖାଲି ହୋଇଗଲା । ଟଙ୍କା ନେଇ ମନ୍ତ୍ରୀ ଯତ୍ନେ ଗମନ କରିଲା । ସିନ୍ଦୁକ ଦେଖି ବୁଢ଼ାର ହଁସା ଉଡ଼ିଗଲା । ଏହାପର ସୌଦାଗର ଦେଖିବାକୁ ନାହିଁ । ପେଖାବସନେ ବୁଢ଼ାର ଅଣ୍ଟୁ ନ ଲୁଚଇ । ପାଞ୍ଚ ପୁଅ ଘର ବୋହୂ ଅଛନ୍ତି ତ ଘରେ । ରୂପଗୁଣେ ସରି ତାଙ୍କୁ ନାହିଁ ଜଗତରେ । ସୁବଳ ସୁରଥ ଅନିରୁଦ୍ଧ ଗଦାଧର । ସବା ସାନ ପୁଅ ନାମ ଯେ ଭ୍ରମରବର । ଇହାର ଜନ୍ମର ପ୍ରାୟ ଦଶୁ-ଛନ୍ତି ସେହି । ସଙ୍ଗ ହୋଇ ପାଠପଢ଼ି ଥାନ୍ତି ପଞ୍ଚଭାଇ । ବୁଢ଼ୀ ସାଧବାଣୀ ଅଟେ ଧର୍ମପରାୟଣ । ପୂଜା କରେ ନିତ୍ୟ ନିତ୍ୟ ବୈଷ୍ଣବ ବ୍ରାହ୍ମଣ । ଟଙ୍କା ଦେଖି କୃପଣ ଯେ ହୋଇଲେକ ବୋଧ । ଧନୀସୌଦାଗରଙ୍କୁ ପଡ଼ିଲା ପ୍ରମୋଦ । ଘରେ ବସିକରି ବୁଢ଼ା କରୁଛି ବିଚାର । ମାସକେ ଖର୍ଚ୍ଚ କେତେ ହେଉଛି ମୋହର । ଆଜ୍ଞାପ୍ରମାଣେ ଗୁମାସ୍ତା କଲାକ ବିଚାର । କାଢ଼ିଲା କହନ କରି କାଗଜ ପତର । ଧନୀସୌଦାଗର ଆଗେ କହଇ ବୁଝାଇ । ତୁମ୍ଭର ଖରଚ ତୁମ୍ଭେ ଶୁଣ ମନଦେଇ । ମାସରେ ହଜାର ପଇସା ଖରଚ ଅଟଇ । ଖରଚ ଶୁଣିଣ ବୁଢ଼ା ଆନନ୍ଦ ହୁଅଇ । ବୁଝା କେତେ ଖରଚ ସୁବଳ ସାଆନ୍ତର । ଏହା ଶୁଣି ଗୁମାସ୍ତା ଯେ ଦେଖଇ ପତର । ପାଞ୍ଚଟଙ୍କା ଖରଚ ଯେ ସାଧବାଣୀ–ଙ୍କର । ଶୁଣି କରି ବୁଢ଼ା ମୁଖୁଁ ନଇଲା ଉତ୍ତର । ବୁଢ଼ା ଶୁଣି ଉଠିଲା ଯେ କୋପଭର ହୋଇ । ପାଞ୍ଚଟଙ୍କା କପା ସେହୁ ଦେଉଛି ଉଡ଼ାଇ । ଗୁମାସ୍ତାକୁ ଆଜ୍ଞା ଦେଲା ହୋଇ ଛଡ଼ପର । ଯାଅ ବେଗେ ଡାକାଆଣି

Digitized by PPRACHIN, SOA

ମାତା ସ୍ୱବଳର । ଏହା ଶୁଣି ଗୁମାସ୍ତା ଯେ ଗଲା ଧୀରେ ଧୀରେ । ପ୍ରବେଶ ହୋଇଲା ଯାଇଁ ସାଧବାଣୀ ପୁରେ । ସାଧବାଣୀ ବସିଅଛି ପଲଙ୍କ ଉପରେ । କେତେ ଦାସୀ ଅଛନ୍ତି ଯେ ତାହାଙ୍କ ପାଶରେ । ଚନ୍ଦ୍ରପେଢ଼ ଯେସନେ କେ ବସିଛି ସମ୍ମୁରେ । ଗୁମାସ୍ତା ପ୍ରବେଶ ହୋଇଲା ଏହି ସମୟରେ । କର ଯୋଡ଼ି ଗୁମାସ୍ତା ଯେ ଜଣାଇଲା ଯାଇଁ । ବିଳମ୍ବ ନ କର ଅସ ଡାକନ୍ତି ସାଆଁଇ । ଶୁଣି କରି ସାଧବାଣୀ ଉଠିଲା ସତ୍ୱରେ । ଆଗେ ଗଲେ ସାଧବାଣୀ ଗୁମାସ୍ତା ପଛରେ । ଦଣ୍ଡେହୁଁ ସୌଦାଗର ପଡ଼ିଲା ନଜର । ବୁଢ଼ା କମ୍ପୁଅଛି ଯେସନେ କଦଳୀପତର । ପାଞ୍ଚଟଙ୍କା ଖରଚ ତୁ କରୁ କାହିଁପାଇଁ । ସାଧବାଣୀ ଶୁଣି ତାହା ଗଲେ ହାତ ଦେଇ । ମଲେ ଗଲେ କେତେ ଧନ ସଙ୍ଗେ ନେବୁ କହ । ଏବେ ବୁଢ଼ା କାଳେ ତୋର ହିଂସା ଗଲା ନାହିଁ । ସାଧବାଣୀ ମୁଖୁଁ ବୁଢ଼ା ଏ କଥା ଶୁଣିଲା । ଯାଇଁ ସେ ବୁଢ଼ୀକି ବୁଢ଼ା ବଧାଏ ମାଇଲା । ବୋଇଲା ଲୋ କାଣ ଶୁଣି ହେଉଅଛୁ ବଣା । ଅଣ ଟଙ୍କା ବ୍ରାହ୍ମଣ ଯା ନେଉଛି ଦକ୍ଷିଣ । ଭାଗବତ ଅଧା ପଦ ଶୁଣୁଅଛୁଁ ତୁହି । ମୋର ଟଙ୍କା ବୃଥା ବ୍ୟୟ କରୁ କାହିଁପାଇଁ । ଭାଗବତ ଶୁଣିଲେ କି ତରନ୍ତି ସଂସାରେ । ସବୁବେଳେ ହରିନାମ ଯେ ବୋଲେ ତୁଣ୍ଡରେ । ଲକ୍ଷ୍ମୀଦେବୀ ନ ରହନ୍ତି ତାହାର ଘରରେ । ଅନ୍ତଃକାଳେ ପ୍ରାଣ ଗଲେ ପଡ଼େ ନରକରେ । ଅଲୋ ତୋତେ ଏ ବୁଦ୍ଧି କିଏ ସେ ଶିଖାଇଲା । ଏତେ ଟଙ୍କା କିପାଁ ବ୍ୟୟକରୁ ମୋର ଭଲା । ସାଧବାଣୀ ବୋଲଇ ହୋ ଶୁଣ ସଉଦାଗର । ପୁତ୍ରଧନ କୁଣିଆ ଯେ । ଅସନ୍ତି ତୁମ୍ଭର । ଚଉଳ ନ ଥିଲେ ଘରେ ପଶିବା ନ ଥାଇ । ଚଉଦ୍ଧନ ମନ୍ତ୍ରେ ମୁଁ ଖଞ୍ଜାଇ ରଖିଥାଇ । ଚମକି ଉଠିଲା ବୁଢ଼ା ବଡ଼ କୋପଭରେ । ଶୁଣ ଆଲୋ ସାଧବାଣୀ କହୁଅଛି ତୋତେ । କାହିଁକି ଖରଚ କର କହ କାହିଁପାଇଁ । କାଞ୍ଜି ଖୁଦପେଜାରେ କି ଅନ୍ନ ନ ରୁଚଇ । ବୁଢ଼ାର ମୁଖରୁ ବୁଢ଼ୀ ଏ କଥା ଶୁଣିଲା । କୋପମନ ହୋଇ ନଦରକୁ ଚାଲିଗଲା । ପୁଣ ଗୁମାସ୍ତାକୁ ଚାହିଁ ବୋଲଇ ଉତ୍ତର ପାଞ୍ଚପୁଅଙ୍କ ଖରଚ କହ ତୁ ସତ୍ୱର । ଶୁଣି ଗୁମାସ୍ତାଙ୍କୁ କହଇ ହୋଇ

Digitized by PPRACHIN, SOA

ଛତ୍ରପର । ପାଞ୍ଚଟଙ୍କା ଖର୍ଚ୍ଚ କଲେ ସ୍ୱବଳ କୁମର । ପାଞ୍ଚଟଙ୍କା ସ୍ୱଳ୍ପ
ଖରଚ କରୁଛନ୍ତି । ଅନିରୁଦ୍ଧ ଦଶଟଙ୍କା ଖରଚ କରନ୍ତି ॥ ଯେତେକ
କହିଲେ ମୋ କଥା କେବେ ନ ଶୁଣନ୍ତି । ଝିଙ୍କା ଝିଙ୍କି କରି ମୋହ-
ଠାରୁ ନେଇଯାନ୍ତି । ବାରଟଙ୍କା ଖରଚ ଯେ ଗଦାଧରଙ୍କର । ଖର୍ଚ୍ଚ
ଏବେ ଶୁଣ ତୁମ୍ଭ ସାନ ପୁଅଙ୍କର । ଯେତେ ଟଙ୍କା ଖରଚ କରନ୍ତି
ସୁନ୍ଦରଭାଇ । ତେତେ ଭ୍ରମରବର ଯେ ଦେଉଛି ଉଡ଼ାଇ । ଏହା ଶୁଣି
କରି ବୁଢ଼ା କାନେ ହାତ ଦେଲା । ଏ ପାଞ୍ଚ ପୁଅଙ୍କୁ ଯମ କପାଁଇ ନ
ନେଲା । ବର୍ଷେ ଖାଇଲେ ସମୁଦ୍ର ନାହିଁ ଯେ ସରଇ । ପାଞ୍ଚପୁଅଯାକ
ମୋର ନ ମଲେ କପାଁଇ । ଆଜ ଯଦି ପାଞ୍ଚପୁଅ ମରନ୍ତେ ମୋହର ।
ଛାଡ଼ି ତୋଳାଇ ଦିଅନ୍ତି ଦେବତା ମନ୍ଦର । ଏହା ଭ୍ରମରବର ତ
ଉଡ଼ାଇଲା ଘର । ଏ ମୂର୍ଖ ନ ଗଲା କପାଁ ଶମନର ପୁର । ବସିକରି
ବୁଢ଼ା ଏକ ଫିକର ପାଞ୍ଚିଲା । ପାଞ୍ଚପୁଅଯାକ ଘରୁ ଛଡ଼ିବ ବୋଇଲା ।
ବିଦେଶକୁ ପାଞ୍ଚଜଣ ଦେବି ମୁଁ ପଠାଇ । ନିୟମ ଯେ କରାଇବି ଚରଣ
ଛୁଆଁଇ । ଆଉ ଘରେ ନ ରଖିବି ପେଶିବି ପ୍ରବାସ । ନ ଗଲେ ପାଞ୍ଚ
ପୁଅଙ୍କୁ ଖୁଆଇବି ବିଷ । ଗୁମାସ୍ତାକୁ ଚାହିଁ କରି ବୋଲଇ ଉତ୍ତର ।
ପାଞ୍ଚପୁଅଙ୍କୁ ଡକାଇ ଆଣ ସତ୍ୱର । ଏହା ଶୁଣି ଗୁମାସ୍ତା ଯେ ଗଲେ
ଧୀରେ ଧୀରେ । ପ୍ରବେଶ ହୋଇଲେ ଯାଇଁ ଗଞ୍ଜେଶାଳୀ ଘରେ । ଦେଖି
କରି ପାଞ୍ଚଭାଇ ହୋଇଲେ ଆନନ୍ଦ । ଧର୍ମସୌଦାଗର ବସି ଖାଉଛନ୍ତି
ମଦ । ଆଗପଛ ପାଞ୍ଚଭାଇ ହୋଇଣ ବାହାର । ହସ କଉତୁକ କେତେ
ହୋଇଲେ ଦାଣ୍ଡର । ବସିଅଛନ୍ତି ସୌଦାଗର ସିଂହଦରଜାରେ । ପାଞ୍ଚପୁଅ
ଯାକ ଯାଇଁ ମିଳିଲେ ସେଠାରେ । ନମସ୍କାର କଲେ ଧରି ପିତାଙ୍କ ଚରଣ
ଉଭା ହୋଇ ପଚାରିଲେ ଡାକିବା କାରଣ । ବୁଢ଼ା ବୋଲେ ବେଗ
ହୋଇ ଯାଅ ପାଞ୍ଚଭାଇ । ପ୍ରବାସେ ନିଶ୍ଚେ ମନ୍ତ୍ରେ ରହ ଘରେ କାର୍ଯ୍ୟ ନାହିଁ
ଆଉ କେତେଦିନ ମୋର ଅଛଇ ବୟସ । ସଙ୍ଗ ହୋଇ ପାଞ୍ଚଭାଇ
ଯାଅରେ ପ୍ରବାସ ॥ ଏହିକ୍ଷଣି ମୋହ ପାଖୁଁ ଯାଅ ବିଦା ହୋଇ ନିଷ୍ଠୁର
ବଚନ ଶୁଣି କଷ୍ଟ ପାଞ୍ଚଭାଇ । ସ୍ୱବଳ ବୋଇଲା ପିତା ଶୁଣ ମନ ଦେଇ ।

Digitized by PPRACHIN, SOA

ସଙ୍ଗହୋଇ ଯାଉଅଛୁଁ ଆମ୍ଭେ ଚାରିଭାଇ । ସାନଭାଇ ଘରେ ଥାଉ ଏ ଭ୍ରମରବର । ଏହା ଶୁଣି ବୁଢ଼ା ମନେ କରଇ ବିଚାର । ଯାହା ଲାଗି କୁଟେ କଲି ଚରଣ ଛୁଆଁଇ । ତାକୁ ଛାଡ଼ି କାରଣ ଯେ ଯିବେ ଚାରିଭାଇ । ବୁଢ଼ା ବୋଲେ ତାରେ କହୁଁ ଛେଉଅଛ ବାଦୀ । ତୁମ୍ଭ ସଙ୍ଗେ ଗଲେ ତାର ଯୋଗିବ କେଉଁ ବୁଦ୍ଧି । ଶୁଣି କରି ସୁବଳକୁ ବୃଦ୍ଧ ନ ଛାଡ଼ିଲା । ଆଗ ବଢ଼ି ସୁରଥ ଯେ ବେଗେ ଜଣାଇଲା । ତୁମ୍ଭର ଏଣିକି ଜେଜେ ଅଛଇ ବୟସ । କହୁଅଛୁ ପିତା ମୋର ନ ଦେବାକ ଦୋଷ । ପ୍ରାଣ ଗଲେ ତୁମ୍ଭ ମୁଖେ କେହୁ ଅଗ୍ନି ଦେବ । ଯେବେ ଭ୍ରମରବରତ ଘରେ ନ ରହିବ । ବୁଢ଼ା ବୋଲେ ବେଗହୋଇ ଯାଅ ପଞ୍ଚଭାଇ । ତୁମ୍ଭ ଅସିବାଯାଏ ମୁଁ ମରିଯିବି ନାହିଁ । ଶୁଣି ପାଞ୍ଚଭାଇଙ୍କ ନ ଛୁଟଇ କଷ୍ଟ । ମେଲାଣି ମାଗିଣ ତହୁଁ ଚାଲେ ପାଞ୍ଚବନ୍ଧୁ । ସାଧବାଣୀ ବସିଅଛି ପଲଙ୍କ ଉପରେ । ପାଞ୍ଚପୁଅ ଯାଇଁ ମିଳିଲେ ପୋଟରେ । ବୋଲେ ବସାଇଣ ମୁଖ ଦେଖନ୍ତି ଚୁମ୍ବନ । ଆଜ୍ଞା ପାଞ୍ଚଭାଇଙ୍କର ବିରସ ବଦନ ପାଞ୍ଚଭାଇ ବୋଲେ ମାତା କିସ କହୁଛଇଁ । ପିତା ସତ୍ୟ କରାଇଲେ ଚରଣ ଛୁଅଇଁ । ଆମ୍ଭେ ପାଞ୍ଚଭାଇ ଆଜ୍ଞା କରିବୁଁ ପ୍ରୟାଣ । ସାଧବାଣୀ ଶିରେ ଛିଡ଼ି ପଡ଼ିଲା ଆକାଶ । ଏଣା କରି ମୋତେ ଯିବ ବାଳୁତନୟ କାହା ମୁଖ ଚାହିଁ ମୁଁ ଯେ କଟାଇବି ଦିନ । ଯେତେବେଳେ ଦାଠ ପଣ୍ଡି ଅସ ହସି ହସି । ପୂର୍ଣ୍ଣିମା ସୁଧାଂଶୁ ପ୍ରାୟ ମୁଖ ଯାଏ ଦିଶି । ଖଡ଼ଧଳ ଦାଢ଼ ଧାଅଇଁ ମୁଁ ଅଞ୍ଚଳରେ । ଚୁମ୍ବନ ଦେଇଣ ମୁଖେ ଧରଇ କୋଳରେ । ଥନ ଭାଙ୍ଗି କରି ମୁଁ ଯେ କ୍ଷୀରପାନ ଦେଲି । ବୃଦ୍ଧ ସମୟରେ ଆସି ଏ କଥା ଶୁଣିଲି । ଅଙ୍କନିଆଁ ମଲା ବୁଢ଼ା ଧନଲୋଭୀ ହୋଇ । ବୁଢ଼ା କଥା ମାନିକରେ ଯିବ ପାଞ୍ଚଭାଇ । ବୟସ ଗଲାରୁ ବୁଢ଼ା ହେଲା ମତିଭ୍ରମ । ଧନଲୋଭୀ ବୁଢ଼ାଟାକୁ ନେଉନାହିଁ ଯମ । ବାପ ବୋଲ ଭାଙ୍ଗିଦିଅ ତୁମ୍ଭେ ପାଞ୍ଚଭାଇ । ଏହା ଶୁଣି ପାଞ୍ଚଭାଇ ବୋଲନ୍ତି ବୁଝାଇ । ତାଙ୍କ ପାଦ ଛୁଇଁ ଆମ୍ଭେ କରିଛୁ ନିୟମ । ପିତା ସତ୍ୟ ଭାଙ୍ଗିଲେତ ହୋଇବ ଅଧର୍ମ ॥ ନାରାୟଣ ଶିଳାରୂପ ହେଲେ ସତ୍ୟକରି । ସତ୍ୟକରି ଭଗୀରଥ

Digitized by PPRACHIN, SOA

ନାଶକୁ ଉଦ୍ଧାର । କଣ୍ଠଦେଇ ଯାଉଅଛୁଁ ଜନନୀ ଗୋ ପାଶେ । ଫେର ଆସିବୁଁ ଯେ ଅମ୍ଭେମାନେ ଗୃହମାସେ । ଭ୍ରମରବରଙ୍କୁ ରଖେ ସାଧରାଣୀ ଧର । ମାତା'ପାଶେ ରହିଲା ସେ ଗମନ ନ କଲ । ଅନ୍ୟ ଗୃହ କୁମରେ ଯେ ବରଷରେ ଗଲେ । ରଖ ନାରୀସ୍ତ୍ରୀଣ ଭ୍ରଙ୍ଗୁରାମ ବରଚଲେ । ଏଥିଅନ୍ତେ ବାଉଳୀଙ୍କ ଶୁଣ ମନ ଦେଇ । ଯାଏ ବସିଛନ୍ତି ଏକ ଠାବେ ଠାବେ ହୋଇ । ଏମନ୍ତ ସମୟେ ପହଞ୍ଚିଲେ ଗୃହଭାଇ । ଦେଖିକର ଗୃହ ଯାଏ ହରଷ ହୋଇ । କେ ବୋଲଇ ଆଇଲେଣି ଗୃହେଁ ଗୋ ସଙ୍ଗାତ । ଆଗରେତ ଆସୁଛନ୍ତି ଅମ୍ଭ ପ୍ରାଣନାଥ । ହସ ହସ ହୋଇ ଗଲେ ଆପଣା ମନ୍ଦିରେ । ଗୃହଭାଇ ମିଳାଗଲେ ଯେ ଯାହାର ଘରେ । କେ ଚନ୍ଦନ ଆଣି ଅଙ୍ଗେ କରୁଣ୍ଡ ଲେପନ । କେ କରେ ଯୋଗାଡ଼ ଅଛି ଭାଜି ଖିଲପାନ । ଦେଖି ଗୃହଭାଇ ଶୋକକ କହନ୍ତି ବଚନ । ଏ ବୟସେ ପରବାସ କାରମ ଲକ୍ଷଣ । କେ ବୋଲଇ ପ୍ରାଣନାଥ କାସ ମୋତେ କହ । ପତ୍ୟଙ୍କର କାହ କାନ୍ତ ତୁଇଁ ମୋର ଦେହ । କେ ବୋଲଇ ମିଛେ ଭଣ୍ଡାଉଛ କାହିଁ ପାଇଁ । ସତ୍ୟ କର କହ କାନ୍ତ ମୋର ମଥାଛୁଇଁ ଦେଇ କର ଗୃହଭାଇ କହିଲେତ ଫେଡ଼ । ନୟୂମ ଜାଉଛୁଁ ସଖି କାଲ ଯିବୁଁ ଛାଡ଼ି । ଶୁଣି ଗୃହଯାଆଙ୍କର ଉଡ଼ିଲା ସାହାସ । ରମଣୀ ଯୌବନ କାଳେ କାନ୍ତ ପରବାସ । ଏ ଯୁବାକାଳରେ ବୁଢ଼ା ହୋଇଲା ମୃଦେହ । ତୁମ୍ଭ ସଙ୍ଗେ ଅମ୍ଭଙ୍କୁ ନେହ ନାଁ ଗୃହଭାଇ । ତୁମ୍ଭେ ଗଲେ ଅମ୍ଭେ ଯିବୁଁ ତୁମ୍ଭର ସଙ୍ଗରେ । ଅଭାଗିନୀ ନାରୀ ହୋଇ କାହିଁ ଥିବୁଁ ଘରେ । ସୁବଳ ବୋଇଲା ସଖି ଦେଉଅଛୁ କଣ୍ଠା । ଦଶଦିନେ ଫେର ମୁଁ ଲେଉ ଆସିବ ନିଶ୍ଚେ । ସୁରଥ ବୋଇଲା ସଖି ଶୁଣ ଯା କହଇ । ବାରଦିନେ ଆସିବ ଲୋ ଚଳ କଣ୍ଠ ଦେଇ । ନାରୀଙ୍କ ପ୍ରବୋଧ କହେ ଅନିରୁଦ୍ଧ ବୀର । ଚଉଦ ଦିବସେ ମୁଁ ଯେ ଆସିବ ନକର । ପଛେ ଯାଇଁ କଣ୍ଠକୁ ଯେ ଦେଳ ଦେ'ଧର । ଷୋଳଦିନେ ଫେର ମୁଁ ଲେଉ ଆସିବ ' ନକର । ଚୁହଭାଇ ଗୃହମଲ ଦେଇ ଗଲେ କଣ୍ଠ । ଧରିଛନ୍ତି ନାରୀ କର ନ୍ତ

Digitized by PPRACHIN, SOA

ଛଜନ୍ତୁ ବାଟ । ଅନେକ ପ୍ରକାରେ ତାଙ୍କୁ ପ୍ରବୋଧ କହିଲେ । ମୁରି ନାଗଙ୍କର ପାଶୁଁ ମେଲାଣି ହୋଇଲେ । ଅଳପ ଧନେ ଅସିବୁଁ ବୋଲି ବାହାରିଲେ । ଜନନୀ ହଜୁରେ ଯାଇଁ ସବୁ ଜଣାଇଲେ ।। ସକଳ କଷ୍ଟୁର ବାଣୀ ଶୁଣି ସେ ବୁଢ଼ୀର । ଭ୍ରମରବରକୁ କହି ହୋଇଲେ ବାହାର । ମୃଦୁର ନଅର କେତେ ଲୋକମାନ୍ତ ସଙ୍ଗରେ । ଧର୍ମସୌଦାଗର ଅନୁ ନିହିଦରୁକାରେ ।। ଶ୍ରୀ ରାମ ଲକ୍ଷ୍ମଣ କି ଭରତ ଶତ୍ରୁଘନ । ଅଯୋଧ୍ୟାରୁ ମୃଦୁଭାଇ କରଇ ଗମନ ।। ପିତାଙ୍କ ଚରଣ ଛୁଇଁ ନମସ୍କାର କଲେ । କରପଣ ଯୋଡ଼ଣ ଘମରେ ଉଭା ହେଲେ ।। ବୁଢ଼ୀ ବୋଲେ ବେଗ ହୋଇ ଯାଅ ପାଞ୍ଚଭାଇ । ପ୍ରମାଦେ କଷ୍ଟିନ୍ତେ ରହ ଘରେ କାର୍ଯ୍ୟ ନାହିଁ । ଏମନ୍ତି କଷ୍ଟୁର ବାଣୀ ବୁଢ଼ୀ କହୁଥାଇ । ଏହାକାଳେ ସାଧବାଣୀ ମିଳି-ଗଲେ ଯାଇଁ ।। ସାଧବାଣୀ ବୋଲେ ତୋରେ କଷ୍ଟୁର ହୃଦୟ । ଭ୍ରମର-ବରକୁ ନ ଛାଡ଼ିବ ସାନ ପୁଅ । ଏହା ଶୁଣି ସୌଦାଗର ହୋଇଲା ମଉନ ମୁରିଭାଇ ପ୍ରବାସକୁ ବାହାରିଲେ ପୁଣ । ସାତଖଣ୍ଡ ଜାହାଜରେ ଟଙ୍କା ଭରି ଦେଲେ । ସତ୍ୟପୀର ଭଜଣ ସେ ଜାହାଜେ ବସିଲେ ।। ଆସ-ମାନେ ମାଗୁକଲେ ସତ୍ୟନାରାୟଣ । ଚଢ଼ିଲେ ଜାହାଜ ଯାଏ ବନ୍ଧୁଗୀ ଯୋଜନ ।। ରାଢ଼ିଙ୍କ ପାଟଣା ଜଣି କର୍ଣ୍ଣାଟ ପାଟଣା । ଶଙ୍ଖଦ୍ୱୀପ ପାଟ-ଣାରେ କଲେ ଯାଇଁ ଠଣା । ଫକୀର ବେଶ ଧଇଲେ ସତ୍ୟନାରାୟଣ । ବୋଇଲେ ହେ ବେଣିକ ଯାଉଛ ମହାଜନ । ମୁରିଭାଇ ବୋଲେ ଅମ୍ଭେ ଯାଉଛୁଁ ପ୍ରବାସ । ମାତା ପିତା ଛାଡ଼ି ଅମ୍ଭେ ଆସିଛୁଁ ବିଦେଶ । ସତ୍ୟପୀର ବୋଲେ ଆଜ ମାନସରେ ଯିବଣି । ଭୃଗୁରାମ ବିଚାରିଲେ ମନେ ମନେ ଗୁଣି । ମୁରିଭାଇ ବୋଲେ ତୁମ୍ଭ ଘର କେଉଁ ଦେଶେ । ପିତା ମାତା ଛାଡ଼ି ଅମ୍ଭେ ଅଛୁ ପରବାସେ । ସତ୍ୟପୀରେ ଶୁଣି ଦେଲେ କେଉଁ କାର୍ଯ୍ୟ ଅଛି । ଚଉଷଷ୍ଠି ତୁମ୍ଭର ତ ନ ଦେଖିଲୁଁ କଛି । ଏହା ଶୁଣି ମହାପ୍ରଭୁ ଆନନ୍ଦ ହୋଇଲେ । ଦଶଅବତାର ରୂପ ତାଙ୍କୁ ଦେଖାଇଲେ । ଦେଖିକରି ମୁରିଭାଇ ପାଦେ ପଡ଼ି ଶୋଇ । ପ୍ରଭୁ ବୋଲେ ବର ମାଗି ନିଅ ମୁରିଭାଇ । ମୁରିଭାଇ ବୋଲେ ଶୁଣ ଆମ୍ଭର ବଚନ ।

Digitized by PPRACHIN, SOA

ଆମ୍ଭମାନଙ୍କର ସ୍ତ୍ରୀ ଖି ନ ପଡ଼ିବେ ମନ । ବେପାରରେ ଗୃହସ୍ଥର ବଢ଼ୁଁ
ପ୍ରତାପ । ଏ ବେପାର ବାଣିଜ୍ୟରେ ହେଉଥିବ ଯଶ । ଯେବେ ଏଠାରେ
ହୋଇବ ସୁବର୍ଣ୍ଣର ଘର । ତେବେତ ଶିରିଣୀ ଦେବା ବାବା ସତ୍ୟପୀର ।
ଏହା ଶୁଣି ସତ୍ୟପୀର ବିଚାରିଲେ ମନ । କୁବେରଙ୍କୁ ଆଜ୍ଞା କଲେ
ଧଅରେ ସୁବର୍ଣ୍ଣ । ଶଙ୍ଖହ୍ରଦ ପାଟ୍ଟଣାରେ ସୁବର୍ଣ୍ଣର ଘର । ତୋଳାଇବ
ପାଇଁ ହେବ ଯେତେ ଦରକାର । ଏହି ବର ଦେଇ ପୀର ଅନ୍ତର୍ଦ୍ଧାନ
ହେଲେ । ଆଜ୍ଞା ପ୍ରମାଣେ କୁବେର ସୁବର୍ଣ୍ଣ ଯେ ଦେଲେ । ତହୁଁ
ଚୁରିଭାଇ ସୁନାଘର ତୋଳାଇଣ । ସୁଖରେ ରହିଲେ ତହୁଁ ବେପାର
କରିଣ । ଯେତେବେଳେ ଚୁରିଭାଇ ଗଲେ ବିଦେଶରେ । ଭଣ୍ଡ
କରି ଯାଇଥିଲେ କନ୍ୟାଙ୍କ ପାଶରେ ॥ ପିଙ୍ଗଳା ସମୟେ ଘର
ବାହାରେ ଚାହାଁଇ । କେତେବେଳେ ଆସିବେ ମୋ ପ୍ରାଣର
ମାଧୋଇ ॥ ଏମନ୍ତ ସମୟେ ଆସି ଜଣେ ଗଣ୍ଡ ସାହୁ । ବସି ଖେଳନ୍ତି
କନ୍ୟାଏ ନଇରେ ଝପାଇ । କେ ବୋଲଇ ଆଣ ସଖି ଗଣକ ଡକାଇ ।
ପ୍ରବାସରେ ଶୁଭେ କି ଅଛନ୍ତି ଚୁରି ଭାଇ । କନ୍ୟା ମନ ଜାଣିଲେ ଯେ
ସତ୍ୟନାରାୟଣ । ଗଣକ ବେଶ ଧରିଣ ବାହାରିଲେ ପୁଣ ॥ ଶଙ୍ଖହ୍ରଦ
ପାଟ୍ଟଣାରେ ଚୁରି ସୌଦାଗର । ନ ପଢ଼ଇ କନ୍ୟା ମନେ କରନ୍ତି
ବେପାର ॥ ଘରେ ବସି ଦୁଃଖରେ କାନ୍ଦନ୍ତି ସାଧାବାଣୀ । ଭର୍ତ୍ତା ଲାଗି
କାନ୍ଦନ୍ତି କି ଗୋପତରୁଣୀ ॥ ଅଛଇ ଭ୍ରମରବର ଆପଣା ମନ୍ଦରେ ।
ପାଠପଢ଼ି ଯାଉଅଛୁ ଚଟ୍ଟଶାଳୀ ଘରେ ॥ ଧନୀ ସୌଦାଗର ଥିଲା ସିଂହ
ଦରୁଜାରେ । ଦେଖି ବୁଢ଼ା ଡାକିଲା ଯେ ଆସ ମୋ ପାଶରେ । ପିତା
ଡାକ ଶୁଣି ପୁଣି ଆଇଲା ସତ୍ୱର । ସମ୍ମୁଖରେ ପ୍ରବେଶ ହୋଇ କଲା
ନମସ୍କାର । ଏକହସ୍ତେ ପୋଥି ଅନ୍ୟ ଏକ ହସ୍ତେ ଖଡ଼ି । ସମ୍ମୁଖରେ ରହିଲା
ପୁତ୍ର ଦୁଇକର ଯୋଡ଼ି ॥ ବୁଢ଼ା ବୋଇଲେ ଘରେ ବେଗେ ଯାଅ ହେ
କୁମର । କରଜ ଠାକୁରୁ କର୍ଜ୍ଜ ତୁ ଅସୁଲ କର । ପାଞ୍ଚହଜାର ନେଇଛି
ରାଜା ସନାତନ । ଅସୁଲ କରିବୁ ଆଜ ଯାଅରେ ବହନ । ରାଜାହାତା
ତମସୁକ କାଗଜ ଜାଣିନେବୁ । ଅସୁଲ ସୁଧ ମୁସାବ କରି ବୁଝାଇ ଦ

Digitized by PPRACHIN, SOA

ଝିଙ୍କା ଯେହ୍ନ ବେଗ ହୋଇ ଆସିବୁ କୁମର । ଏହା ଶୁଣି କୁମର ଯେ ବୋଇଲା ଉତ୍ତର । ଷୋଳ ଯୋଜନରେ ଭୁଢ ଅଛି ସୌଦାଗର । ପକ୍ଷୀରାଜ ଘୋଡ଼ା ମୋତେ ଦିଅ ଶୀଘ୍ରତର । ବୁଢ଼ା ବୋଲେ ଅରେ ପୁତ୍ର ହୋଇଲୁ କି ବାଇ । ଘୋଡ଼ା ନେଲେ ତାହା ପାଇଁ ଖରଚ ହୁଅଇ । ଏହା ଶୁଣି କୁମରର ବୁଦ୍ଧି ନଷ୍ଟ ହେଲା । ରାଜ ତମସୁକ ନେଇ ହସ୍ତରେ ଧଇଲା । ଧୀରେ ଧୀରେ କୁମର ଯେ ବାହାର ହୋଇଲା । ଜନନୀ ମନ୍ଦିରେ ଯାଇଁ ରଜନୀ ବଞ୍ଚିଲା । ରାତ୍ର ପୁରୁ ଘଡ଼ି ଥାଉଁ ଉଠିଲା କୁମର । ପକ୍ଷୀରାଜ ଘୋଡ଼ା ଚଢ଼ି ହୋଇଲା ବାହାର । ସେହି ପକ୍ଷୀରାଜ ଘୋଡ଼ା ଶୂନ୍ୟେ ଉଡ଼ିଗଲା । ମାଳଧର ବଗିଚାରେ ପ୍ରବେଶ ହୋଇଲା । ଏକ କ୍ରୋଶ ଦୀର୍ଘ ପ୍ରସ୍ଥ ରାଜା ଉପବନ । ଘୋଡ଼ା ଉପରୁ ଉତୁର ପାଧୁର ନନ୍ଦନ । ବଉଳ ବୃକ୍ଷରେ ନେଇ ଘୋଡ଼ାକୁ ବାନ୍ଧିଲା । ଫୁଲବନେ କୁମର ଯେ ପଥ ନ ପାଇଲା । ପୁଷ୍ପ ବଗିଚାରେ ବେଷ୍ଟ ପୋଖରୀ ଯେ ଗୋଟି । ଚମ୍ପା କନିଅର ଜାଇ ଯୁଈ ଅଛି ଫୁଟି । ମାଧବୀ ମଲ୍ଲୀ କୁନ୍ଦ କୁସୁଅନା ଜାତି । ନଅଲି ରଙ୍ଗଣୀ କିଅ ଅଶୋକ ସେବତୀ । ସେ ପୋଖରୀ ଗୋଟି ରାଜା ଅଛନ୍ତି ଖୋଳାଇ । ନାଉ ଉହୁଁ ମାଛଣ ଫୁଅନ୍ତି ଜେମାଦେଈ । ରାଜାଙ୍କ ନନ୍ଦନୀ ନାମ ଅଟେ ରଙ୍ଗବତୀ । ସେହି ପୋଖରୀରେ ସ୍ନାନ କରେ ଯାଇଁ ନିତି । ଦୈବଯୋଗେ ରଙ୍ଗାବତୀ ଯାଏ ସ୍ନାନ କରି । ଦାସୀ ପରିଚାରୀ କେତେ ଅଛନ୍ତି ଯେ ଘେରି ମାଜଣା ଭିତେ ବଢ଼ାଇ ଉଠଇ ରଙ୍ଗବତୀ । କେତେ ଦାସୀ ପରିଚାରୀ ତା ସଙ୍ଗେ ଅଛନ୍ତି । ଏଣେ ଭ୍ରମରବର ଯେ ଅଛି ଠିଆ ହୋଇ । ରଙ୍ଗବତୀ କନ୍ୟାକୁ ଯେ ବେଗେ ଦେଖି ଚାହିଁ । ଦେଖି କରି କୁମରର ପାଦନ ଚଳିଲା । ଗଣ୍ଡେ ହସ୍ତ ଦେଇ ତାକୁ ଦଣ୍ଡେ ଅନାଇଲା । ଦେଖି ନାରୀ । କନ୍ୟା ତାକୁ କରଇ ବିଚାର । ଭଉ ଭୁଟେଜ ପଣ୍ଡରେ ହେ ବିଦେଶୀ କୁମର । କାହାର କୁମର ଅଛୁ ଆସିଲୁ ଏଠାରେ । ସୂର୍ଯ୍ୟକିରଣ ନ ଛୁଏଁ ଏ ଉପବନରେ । ଏଥିକୁ କିପରି ଭୁଢ ଆସିଲୁ ସୁନ୍ଦର । ସ୍ୱରୂପ ବଚନ ମୋତେ କହ ତୁ ନିକର । ବାପ ମୋ ପ୍ରତାପୀରାଜା ଅଟେ

Digitized by PPRACHIN, SOA

ମହାସ୍ଥଳେ । ଶୁଣିଲେ ଅବଶ୍ୟ ତୋତେ ମାରିବ ନଷ୍ଟଲେ ! ଭ୍ରମର ବୋଲେ ମୋ ଘର ମାଣିକ୍ୟ ସହର । ମୋର ପିତା ନାମ ଅଟେ ଧନୀ-ସୌଦାଗର । ରାଜ୍ୟ ଯାକେ ବନ ମଧ୍ୟେ ନ ପାଇଲି ପଥ । ଟଙ୍କା ଅଧିକ ଜମନ୍ତ୍ରେ ଆସିଅଛି ମୁଁ ତ । ରଙ୍ଗବତୀ ବୋଇଲା କେ ଶୁଣ ସୌଦାଗର । ତୋର ମୋର ସତ୍ୟ ହେଲା ପୋଖରୀ କୂଳର । ତୁମ୍ଭେ ମୋର ପତି ହେଲ ମୁଁ ତୁମ୍ଭ ଯୁବତୀ । ଭ୍ରମର ବୋଲେ ସୁନ୍ଦରୀ ଏ ମିଥ୍ୟା ଭାରତୀ । ରଙ୍ଗବତୀ ବୋଇଲା ନୁହଇ ମିଥ୍ୟା ଭାଷ । ବାପ ଶେଷେ ମୋ କହିବା ବୁଝିବ ଅବଶ୍ୟ । କେଶ ଧର୍ମ ଦେବତା ସେହି ଅଛନ୍ତି ଜାଗି । ପୋଖରୀ-କୂଳରେ ସତ୍ୟ କରୁଅଛୁ ମୁହିଁ । ରଙ୍ଗବତୀ ଘେନ୍ୟା ତହିଁ କହିଲା ସଙ୍କେତ । ଆମ୍ଭ ସିଂହ ଦରୁଜାରେ ବସିଥିବୁ ତୁତ । ପିତାକୁ ମଣାଇ ଅଛ ଛୁଆଇବ ସତ୍ୟ । ଏ କଥାକୁ ସତ୍ୟ ମୁହିଁ ଯେ କହୁଛି ନିଶ୍ଚିତ । ଏତେ କହି କନ୍ୟା ଗଲା ଆପଣା ସଦନରେ । ରଙ୍ଗବତୀ କନ୍ୟା ଯାଇଁ ରାଣୀଙ୍କ ସମ୍ମୁଖେ ।। ଅଗାରୁ ଔଦା ବସନ ପାଲଟିଲା ନାହିଁ । କବାଟ କିଳଣ କନ୍ୟା ମୁଣ୍ଡ ମାଡ଼ି ଶୋଇ । ରାଣୀ ଏହା ଶୁଣି ଆସି ତାକୁ ପଚାରଇ । ଏ କି ବିପରୀତ କଥା କହି ରହିଲେଉ । ଓ ଓ ବୋଲି ରାଣୀ ଧରିଛନ୍ତି କର । ଏହା ଶୁଣି ରଙ୍ଗବତୀ ବୋଲଇ ଉତ୍ତର । ପୋଖରୀ କୂଳରେ ଅଛ କରିଅଛି ସତ୍ୟ । ଅଧ ସୌଦାଗରଙ୍କୁ ଯେ ବାଧି ହେବ ମୁଁ ତ । ଏହା ଶୁଣି ରାଣୀ ଗଲେ ରାଜା ଅନ୍ତଃପୁର । ରଙ୍ଗବତୀ ଗୁହାଳରେ ବିଦେଶୀ ଭ୍ରମର । ଏହା ଶୁଣି ମହାରାଜା ଗଲେ ଧୀରେ ଧୀରେ । ଦେଖିଲେ ଭ୍ରମର ଅଛି ସିଂହଦରୁଜାରେ । ରାଜା ପଚାରିଲେ ବାବୁ ଶୁଣରେ ଭ୍ରମର । କେଉଁ ଦେଶ ଆସିଅଛୁ କହନ ଉତ୍ତର । ଭ୍ରମର ବୋଇଲା ଘର ମାଣିକ୍ୟ ସହର । ମୋହର ପିତା ନାମ ଅଟେ ଧନୀ ସୌଦାଗର । ମନ୍ତ୍ରୀ ଜାଣିଛନ୍ତି ଧନ୍ଦା ଭ୍ରମସ୍ତ୍ର ନାଅ ଯେତେ ଟଙ୍କା ହେଲା ମୋର ଗଣି କହ ପାଅ । ଏହା ଶୁଣି ମହାରାଜା ହୋଇଲେ ମଉନ । ମନ୍ଦିରକୁ ବାହାରିଲେ ଶୁଣି ତା ବଚନ । ମନ୍ଦିରେ ବସିଣ ରାଜା ତର୍ଜ୍ଜେ ହସ୍ତ ଦେଲେ । ରଙ୍ଗବତୀ କନ୍ୟାକୁ ସେ

Digitized by PPRACHIN, SOA

ନିଶ୍ୱାସ କାଢ଼ିଲେ । ରାଜା ବୋଲୁଛନ୍ତି ଝିଅ ମୁଣ୍ଡ ଯେତେ ତୋର ।
ବଣିଆ ପୋଖାଟା ତୋର ହୋଇବ ଯେ ବର । ତାର ପିତା ନାମ ଅଟେ
ଧନ ସଉଦାଗର । ପୋଟଳ ବାନ୍ଧଣ ଦେଇ ବୁଲଇ ବଜାର । ରାଜାର
ଶୁଣକୁ ବାନ୍ଧି ଦେବ ମୁହିଁ । ଏହା ଶୁଣି ରଙ୍ଗବତୀ ବଚନ
କୋଲଇ । ପୋଷଣ କ୍ଷିତିରେ ଆଜ କରିଅଛୁ ସତ୍ୟ । ଆଜ ସଉଦାଗରକୁ
କାନ୍ଧ ଦେବ ମୁଁ ତ । ସେ ଗଉଡ଼ ହେଲେ ମୁଁ ତ ଗଉଡ଼ୁଣୀ
ହେବ । ସେ ବଣିଆ ହେଲେ ମୁଁ ତ ପଟୋଳ ବାନ୍ଧିବ । ସେ ଯୋଗୀ
ହୋଇଲେ ମୁଁ ତ ଯୋଗ ଆଣି ହେବ । ସେ ଭିକ୍ଷା ମାଗିଲେ ମୁଁ ତ ଥାଳ
ଦେଇଥିବ । ଏହା ଶୁଣି ମହାରାଜା ଉଠିଲେ ପ୍ରଜ୍ୱଳେ । କୁଳ ବୁଡ଼ାଇଲୁ
ବୋଲି ଦେଲେ ବହୁ ଗାଳି । ଏତେ ଦୁରୁଜନ କର୍ପା ହେଲୁ
ରଙ୍ଗବତୀ । ବଣିଆକୁ ବନ୍ଧା ହୋଇ ହରାଇବୁ ଜାତି । ଏତେ ବୋଲି
ରାଜାଙ୍କର ଘୋଷା ଉପୁଜିଲା । ନାନା କଟୁକଥା କହି ତାକୁ ଗାଳି
ଦେଲା । ରଙ୍ଗବତୀ ବୋଲେ ପିତା ଶୁଣ ନିବେଦନ । ସପ୍ତମ ବରଷେ
କନ୍ୟାଦାନର ନିୟମ । ଚଉଦବରଷ ଆସି ହୋଇଲଣି ମୋତେ ।
ମୋହର କଥା ଚେତନ ନ ପଡ଼ିଲା ତୁମ୍ଭ ଚିତ୍ତେ ॥ ଦ୍ୱାଦଶ ବରଷଠାରେ
ହେଲି ପୁଷ୍ପବତୀ । ମୋ ଶୋଣିତ ତୁମ୍ଭ ପିତୃଲୋକେ ପାଉଛନ୍ତି ।
ଯତନରେ ମୋତେ ଅଛ ଯେ ବଢ଼ାଇ । ଏତେବେଳେ ଦରିଅରେ
ଦେଉଛ ଭସାଇ । ଏହିପରି ରଙ୍ଗବତୀ ଅନେକ କହିଲା । ବର୍ତ୍ତମାନ
କଥା ରାଜା ବୁଝୁରେ ବାଜିଲା ॥ ରଙ୍ଗବତୀ ମୁଖରୁ ଯେ ଏ ବଚନ
ଶୁଣି । ବାକ୍ୟ ନ ସ୍ଫୁରିଲା କଣ୍ଠୁ ଦଣ୍ଡେ ହୋଇ ତୁନି । ବୋଇଲେ ଝିଅ
ଦାଣ୍ଡକୁ ଦଶୁଛ ଅଶୋଭା । ବଣିଅଟାକୁ କପର ଜାଣି ବାନ୍ଧ ଦେବା ।
ରାଜ୍ୟ ବାଡ଼ କନ୍ଥ ନ ଦେବଇ ଯଉତୁକ । ସତ କହୁଅଛି ତୋତେ ନ
ଗୃହିଁବି ମୁଖ ॥ ଏହା କହି ନରପତି ମଣ୍ଡାଇଲେ ଘର । ଭ୍ରମରବରକୁ
କରି ନେଲେ ଯେ ଆଦର । ବନେ ବର୍ଣ୍ଣ ମାଳା ଦେଇ କହିଲେ ବଚନ
ରଙ୍ଗବତୀ କନ୍ୟାକୁ ମୁଁ କରିବ ପ୍ରଦାନ । ମଙ୍ଗଳରେ ଅଧିବାସ କରି
ତାହା ପୁରେ । ବରକନ୍ୟା ବସିଛନ୍ତି ବହୁବେଦୀ ପରେ ॥ ପ୍ରଥମରେ

Digitized by PPRACHIN, SOA

ପୂଜେ ଷଷ୍ଠଦେବତା ଚରଣ । କଙ୍କଣତୁକ ସୂତ କରେ ବାନ୍ଧିଲେ ବ୍ରାହ୍ମଣ । ବୈଶାଖ ରୋପଣ ସାର ଲବଣତ୍ରୁମସୀ । ବଭାଶେଷେ ବର କନ୍ୟା କୂଟାଖେଳ କର । ବଭା ସାର ବରକନ୍ୟା ଆନନ୍ଦୋତ ମନ । ଉତ୍ରଗ୍ରାମ ବର୍ତ୍ତିଲେ ରଖ ନାରାୟଣ । ଅରଦିନ କନ୍ୟା ଘେନ ହୋଇଲେ ବାହାର । ପ୍ରବେଶ ହୋଇଲେ ଯାଇଁ ଆପଣା ମନ୍ଦିର ॥ ସିଂହଦ୍ୱାରେ ବସିଥିଲା ଧନୀସୌଦାଗର । ଭ୍ରମରବର ଉପରେ ପଡ଼ିଲା ନଜର । ଦେଖିଲାକ ବଡ଼ ହୋଇ ଆସୁଛି କୁମର । ପାଞ୍ଚହଜାର ଟଙ୍କା ଯେ ବୁଡ଼ାଇଲା ମୋର । ଦେଖିକର ସୌଦାଗର ଶାଳୁ ଖରତରେ । ପ୍ରବେଶ ହୋଇଲା ଯାଇଁ ସାଧବାଣୀ ପୁରେ । ଶୁଣ ଶୁଣ ସାଧବାଣୀ ଶୁଣ ମୋ ଉତ୍ତର । ପାଞ୍ଚସହସ୍ରଙ୍କା ବୁଡ଼ାଇଲା ତୋ କୁମର ॥ ଶୁଣି ସାଧବାଣୀ କିଛି ବୁଝି ନ ପାରିଲା । ପାଲଙ୍କେରେ ବସିଅଛି ପୁଅକୁ ଦେଖିଲା । ସାଧବାଣୀ ବୋଲେ ମୋତେ ବାଟ ଛାଡ଼ ଦିଅ । ମୋରପୁଅ ବଡ଼ ହୋଇଅଛି ରଜାଝିଅ । ଏତେ ବୋଲି ତାହାକୁ ସେ ବେଗେ ପେଲି ଦେଇ । ଅର୍ଘ୍ୟଥାଳୀ ଘେନ ବନ୍ଦାପନା କଲା ଯାଇଁ । ପୁଅ ବଧୂ ଘେନ ବୁଢ଼ୀ ଆପଣା ମନ୍ଦିରେ । ରଙ୍ଗବତୀ ରହେ ଶ୍ୱଶୁରଯାଆଙ୍କ ପାଶରେ । ଶାଶୁକୁ ଦେଖି ସେ ବୋହୂ ବଡ଼ଭକ୍ତି କରି । ଆଗେ ଯାଇଁ ଓଳଗିଲା ଚରଣକୁ ଧରି । ରଜାଝିଅ ବୋଲି କନ୍ୟା ମନେ ଗର୍ବ କଲା । ଶ୍ୱଶୁରଯାଆ ଥିଲେ ତାଙ୍କୁ ଓଳଗି ନୋହିଲା । ଏକକୁ ସରେକ କନ୍ୟା ହେଲେ ଠାଠର । ଏକେ ଏକେ ରହିଲେ ସେ ହଂସାଭିବ ଧରି ଏଥୁଅନନ୍ତରେ ଶୁଣ କଥା ଦିବ୍ୟରସ । ଦୁଇଦିନ ଯାଇ ତିନିଦିନ ହେଲା ଶେଷ । ଚତୁର୍ଥ ଦିନର ବେଳ ଦୁଇଘଡ଼ିଠାରେ । ଭ୍ରମରବରକୁ ବୁଢ଼ା ଦେଖିଲା ଆଗରେ । ଦେଖି କରି ବୁଢ଼ା ତାକୁ ମନେ ବିଚାରଇ । ଘରଦ୍ୱାର ବୋହୂ ଦେବ ରାଜାର ଝିଅଇଁ । ଖରଚ ମିଛ କଲ ମୋର ସାରବ ସମ୍ପତ୍ତି । ଭ୍ରମରବରକୁ ବୁଢ଼ା କଲାକ ବିନତି । ଭ୍ରମରବର ଚରଣେ ବୁଢ଼ା ପଡ଼ି ଶୋଇଲା । ରାଜା ହୋଇଁ ହେଲି ଦୋଷ କ୍ଷମାକର ତୁହି । ଏହା ଦେଖି ଭ୍ରମର ଯେ କଣ୍ଠେ ଦେଲା ହାତ । ମନେ ବିଚାରିଲେ ପିତା କଲେ କାଏ

Digitized by PPRACHIN, SOA

କୃତ୍ୟ । କନ୍ୟାଲାଗି ସିନା ପିତା ପଡ଼ିଲେ ଚକ୍ଷଣେ । କନ୍ୟାମୂର୍ଖ ନ ଗୃହିଁବ ନ ରହିବ ଷଣେ । ଏ ଧନ ସମ୍ପଦେ ମୋର କିଛୁ କାର୍ଯ୍ୟ ନାହିଁ । ଦୂରଦେଶ ଯିବି ଆଜ କା ମୁଖ ନ ଗୃହିଁ । ଖଣ୍ଡ ଧଢ କୁମର ଯେ ଲେଖିଲା ଏମନ୍ତ । ତୋର ଲାଗି ଗୋଡ଼ଛଳେ ପଡ଼ିଲେ ମୋ ତାତ । ଏହି ହେତୁ ସୁନ୍ଦରୀ ଯାଉଛୁ ପରବାସ । ରଙ୍ଗବତୀ ମୋର ଆନ୍ତ ନ ଧରିବୁ ଦୋଷ । ଏତେ ଲେଖି କୁମର ଯେ ପଳାଇଲା ଖରେ । ପ୍ରବେଶ ହୋଇଲା ଶଙ୍ଖହ୍ରଦ ପାଟଣାରେ । ଗୃହଭାଇ ସଙ୍ଗତରେ ମିଳିଲାକ ଯାଇଁ । ଗୃହଭାଇ ବୋଇଲେ ତୁ ଅଇଲୁ କପାଇଁ । କୁମର ବୋଇଲା ଭାଇ ପଚ୍ଛୁରୁଛ କିବା । ରାଜାଝିଅ ରଙ୍ଗବତୀ ମୋତେ ହେଲା ବିଭା । କି କହିବ ଭାଇ ପିତା ଉଗାଢ଼ ହୋଇଲା । ଗୋଡ଼ତଳେ ପଡ଼ି ଯାହା ବୋଲଣ ବୋଇଲା । ଅସିବାର ମୋର ନ ଜାଣଇ ରଙ୍ଗବତୀ । ଖୋଜ ଖୋଜ ଭାଇ ମୁଁ ଅଇଲି ତୁମ୍ଭ କତି । ଗୃହ–ଭାଇ ବୋଇଲେ ରେ ଆମ୍ଭ ପାଶେ ରହ । ବୁଢ଼ା ପ୍ରାଣେ ଥିବାଯାଏ ଘରକୁ ନ ଯାଅ । ଏତେ ବୋଲି ଆନନ୍ଦେ ରହିଲେ ପାଖଭାଇ । ଭୃଙ୍ଗୁରାମ ବଇଠିଲେ ରାଏ ଗଲା ପାହି । ଏଥୁଅନନ୍ତରେ ଶୁଣ ଅପୂର୍ବ ଚରିତ । ଉଠିଲାକ ରଙ୍ଗବତୀ ପାହିଯାଉଁ ରାଏ । ନିଦ୍ରା ଅଶକ୍ତ ଚେତ ଉଠିସେ ସୁନ୍ଦରୀ । ଖୋଜେ କେଉଁଣେ ଗଲେ ନାଥ ମୋତେ ଏକା କରି । ଏହିପରି ଭାଳୁଅଛି ଶେଯରୁ ସେ ଉଠି । ଏରୁଣ୍ଡିବନ୍ଧରେ ତାର ପଡ଼ିଗଲା ଦୃଷ୍ଟି । ସ୍ୱାମୀର ସଙ୍କେତ ଲେଖା ଜାଣି ସେ ସୁନ୍ଦରୀ । ନିରେଖି ଦେଖିଣ ତାର ପାଟେଶ ଯଇଁକରି । ଯାହା ଲେଖା ହୋଇଥିଲା ତାହା ଗଲା ପଢି । ଶୁଣି ସାଧବାଣୀ କାନ୍ଦେ ହୋଇ ମୂର୍ଚ୍ଛିକୋଢ଼ । ଶୋକ–ଭରେ ସାଧବାଣୀ ପଡ଼ିଲାକ ତଳି । ହାତ ଲାଗି ଯେସନ୍ତେ ଝାଉଁଳାଇ ଲାଜକୁଳି । ଶ୍ରୀରାମ ବିହୀନେ ଯେସନ୍ତେ କଉଶଲ୍ୟା କାନ୍ଦେ । ସାଧବାଣୀ ସେହିପରି କରମକୁ ନିନ୍ଦେ । ଭାବେ କପାଁ । ପିତା ପୁଏ ଚରଣେ ପଡ଼ିଲା । ଧନଲୋଭୀ ହୋଇ ବୁଢ଼ା ସବୁ ବୁଡ଼ାଇଲା । ଏତେବୋଲି ସାଧବାଣୀ ବେଗେ ଚଳିଗଲା । ଧନୀ ସୌଦାଗର ପାଶେ ପ୍ରବେଶ

Digitized by PPRACHIN, SOA

ହୋଇଲା ॥ ଶୁଣ ଶୁଣ ସୌଦାଗର ଶୁଣ ମୋ ଉତ୍ତର । ଦେଖ କସ
ଲେଖା ଅଛି ଏରୁଣ୍ଡିବନ୍ଧର ॥ ଶୁଣି ବୁଢ଼ା ମନେ ମନେ ତାହା ଗଲା
ପଢ଼ି । ମରମର କଥା ଯାହା ତାହା ଗଲା ଛାଡ଼ି ॥ ଏଣୁ ପଢ଼ୁଥାଏ ବୁଢ଼ା
ତେଣୁ ପଢ଼ୁଥାଇ । ମରମ ଅକ୍ଷର ବୁଢ଼ା ଦଅଇ ଗୋଳାଇ ॥ ସାଧବାଣୀ
ବୋଲେ ମୁଁ କି ପାଠ ପଢିନାହିଁ । ଏ ଅକ୍ଷର ସବୁ କାହିଁ ଦେଉଛ
ଗୋଳାଇ ॥ ବୁଢ଼ା ହାତଧରି ବୁଢୀ ଟକାଇଣ ଦିଏ । ବୁଢ଼ାକୁ ପକାଇ
ବୁଢ଼ୀ ମାଇଲା ମୁଷିଏ ॥ ଗୋଟି ଗୋଟି କରମୋର ଧୁଡ଼ି ଦେଲୁ କାଢ଼ି ।
ଏହା କହି ଦିଏ ବୁଢ଼ୀ ନାକ କାନ ମୋଡ଼ି ॥ ବୁଢ଼ା ବୋଲେ ଭ୍ରମର-
ବରଟି ଗଲା ଯେବେ । ରାଜାଝିଅଠାରେ ତୁ ନଜର ରଖ ଏବେ ॥
ଯେବେ ମୋର ପାଞ୍ଚବୋହୂ ଥିବେ ସଦନରେ । ତାଙ୍କ ଲାଗି କୁମରେ
ଯେ ଅସିବେ ମନ୍ଦିରେ ॥ ଏତେ କହି ବୁଢ଼ା ଗଲା ଆପଣା ମନ୍ଦିରେ ।
ଭୃଗୁରାମ ବଉଚଲେ ଝଙ୍ଗ ସତ୍ୟପୀରେ ॥ ରଙ୍ଗବତୀ ରହିଲେ ଯେ
ଆପଣା ମନ୍ଦିରେ । ଭ୍ରମରବରକୁ ଚିନ୍ତା କରି ମାନସରେ ॥ ପୋଖରୀ-
କୂଳରେ ମୁଁ ତ ସତ୍ୟ କରିଥିଲି । ଇଚ୍ଛାମାଳା ଦେଇ ତାଙ୍କୁ ଯେବେଟି
ବରିଲି ॥ ସଦା ପାଶେ ଥିବ କହିଥିଲେ ଅନୁରାଗେ । କି ଦୋଷ
ଦେଖି ମୋ କାନ୍ତ ଛାଡ଼ିଗଲେ ବେଗେ ॥ ଏତେ ଭାବି ରଙ୍ଗବତୀ
କରଇ ରୋଦନ । ପ୍ରାଣନାଥ ଲାଗି ଆଜ ତେଜିବ ଜୀବନ ॥ ଏତେ
ବୋଲି ରଙ୍ଗବତୀ ମନରେ ବିଚାରି । କଳାମେଘୀ ଶାଢ଼ୀକି ଯେ ପକା-
ଇଲା ଚିରି । ସେହି ଚିରାଶାଢ଼ୀକି ସେ ଦଉଡ଼ି ବଳିଲା । ଗଳାରେ
ବାନ୍ଧିଲା ନେଇ ଓରରେ ବାନ୍ଧିଲା ॥ ସେହିକଥା ମହାପ୍ରଭୁ ଜାଣିଲେ
ଅନ୍ତରେ । ଆପଣା ଆସ୍ଥାନ ତେଜି ଅଇଲେ ସତ୍ୱରେ ॥ ମାୟାବତୀଙ୍କି
ସେ ଡାକି କହିଲେ ସତ୍ୱରେ । ବେଗେ ଯାଅ ମାୟାବତୀ ଆମ୍ଭ
କୁମରେ ॥ ଗଳାରେ ଦଉଡ଼ି ଦେଉଅଛି ରଙ୍ଗଦେଈ । ତହିଁରୁ
ତାହାକୁ ରକ୍ଷାକର ବେଗେ ଯାଇଁ ॥ ସେ ସମୟେ କୋକିଳ ରାବିଲେ
ଘନଘନ । ଭୁଲାଇଲେ ମାୟାବତୀ ରଙ୍ଗବତୀ ମନ ॥ କୋକିଳ
ବଚନ କନ୍ୟା ଶୁଣନ୍ତେ କର୍ଣ୍ଣରେ । ବୋଲେରେ କୋକିଳ ଥିଲୁ ଏହା

Digitized by PPRACHIN, SOA

ମୋ କର୍ମରେ ॥ ଯନ୍ତ୍ରବନ ଭାର ମୁଁ ତ ନ ପାରଇ ସହି । ଗଳାରେ ଦଉଡ଼ି ଦେଇଅଛୁ ଯେ ଲଗାଇ ॥ ଏହିପରି କୋକିଳକୁ କହୁଛୁ ବୁଝାଇ । କନ୍ୟାନ୍ତରେ ପ୍ରବେଶିଲେ ଫକୀର ଗୋସାଇଁ ॥ କାଳିଆ ସୁଦୀର୍ଘ ଦେହ ମୁଣ୍ଡେ ଲମ୍ବାଦାଢ଼ୀ । ପାକଲା ଦଶକୁ ବୁଢ଼ା ଦେଉଅଛି ମୋଡ଼ି ॥ ଦେଖି-କରି ରଙ୍ଗବତୀ ମନେ ଭୟ କଲେ । ଦାଢ଼ୀଦଉଡ଼ିକୁ ଶୀଘ୍ର ଗଳାରୁ କାଢ଼ିଲା ॥ ଫକୀରକୁ ଦେଖି ପଚାରଇ ରଙ୍ଗବତୀ । ଏତେ ରାତିରେ ଅଇଲ କାହିଁ ମୋର କଥା ॥ ଏହା ଶୁଣି ତାହାଙ୍କୁ ବୋଇଲେ ସତ୍ୟ-ପୀର । ତୋ ଅକୁଳ କନ୍ୟା ମୋର ଶୁଭିଲା କର୍ଣ୍ଣରେ । ଯନ୍ତ୍ରବନ ଭାରି ତୁ ତ ନ ପାରୁ ସହି । ଗଳାରେ ଦଉଡ଼ି କନ୍ୟା ଦେଉଛୁ ଲଗାଇ ॥ ପାଞ୍ଚଦଣ୍ଡ ରାତିଠାରେ ଜାଣ ଥିବୁ ବସି । ଏକାନ୍ତେ ଭ୍ରମରବର ପହଞ୍ଚିବ ଆସି ॥ ଶିରଣୀ ଖାଇବାପାଇଁ ଏତେକ ଫିକର । ରଙ୍ଗବତୀ ଶୁଣି ହେଲା ହରଷ ଅନ୍ତର ॥ ତହୁଁ ଅବଧାନ ଦବା ଶେଷ ହୋଇଗଲା । ନିଶା ଦେଖି ରଙ୍ଗବତୀ ଚଞ୍ଚଳ ହୋଇଲା ॥ ପଲଙ୍କ ଉପରେ ନେଇ ବିଛାଇଲା ଶେଯ । ମନେ ବିଚାରିଲା କାନ୍ତ ଆସୁଥିବେ ଆଜ । ରତ୍ନଦୀପ ଜାଳି କନ୍ୟା ହେଉଁ ଉଜାଗର । ମନେ ବିଚାରନ୍ତେ ପ୍ରଭୁ ବାବାସତ୍ୟପୀର ॥ ଭ୍ରମରବର ଯେ ଶଙ୍ଖଦ୍ୱାଦ ପାଠଶାଳେ । ଯୁବତୀ ବେଶରେ ପ୍ରଭୁ ଗଲେ ଧୀରେ ଧୀରେ ॥ ନାରୀବେଶେ ବାହାରିଲେ ସତ୍ୟନାରାୟଣ । ପାଦରେ ଝୁଣ୍ଟିଆ ବଳା ହସ୍ତରେ କଙ୍କଣ ॥ ବାହେ ସୁନା ବାହୁଟି ଗଳାରେ ରତ୍ନମାଳ । ନେତ୍ରରେ ଦେଲେ ପ୍ରଭୁ ମୋହିନୀ କଜ୍ୱଳ ॥ ରୁଣ-ଝୁଣ ବାଜୁଅଛି ପାଦରେ ନୂପୁର । ଭ୍ରମରବରକୁ ଦେଖା ଦେଲେ ସତ୍ୟପୀର ॥ ମାୟାବତୀ ରୂପ ଧରି ଦେଖାଦେଲେ ଯାଇଁ । ଭ୍ରମର-ବରକୁ ଦେଲେ ମୋହିନୀ ଲଗାଇ ॥ ତହୁଁ ସେ ରୂପ ମରମେ ପୀଲ୍ଲେ ଜାନପାର । ତାଙ୍କୁ ଦେଖି କୁମର ଯେ କରଇ ବିଚାର ॥ କା ବୁଦ୍ଧି କରିବା ମୋତେ ବୁଦ୍ଧି ଦିଶୁନାହିଁ । ମାୟାବତୀ ଦେଖି ସାଧୁ ହେଲା କାମେ ବାଇ ॥ ନ ବିଚାରି ଭାଇଙ୍କ କେମନ୍ତେ ଯିବ ଆଜ । ନ ଦେଖିଲେ ମୋତେ ଭାଇ ହୋଇବେଟି ଶୋକ ॥ ଭୋଜନ ସାରିଣ ଯେ ଶୋଇଲେ

Digitized by PPRACHIN, SOA

ଗୃହଭାଇ । ଭ୍ରମରବର ନୟନେ ନିଦ୍ରା ମାତ୍ରେ ନାହିଁ । କହ୍ନି କହ୍ନି କୁମରର ହୃଦୟ କମ୍ପଇ । ମାୟାବତୀ ଲାଗି ସାଧୁ ହେଲା କାମେ ବାଇ ॥ ଏ ସମୟେ ମାୟା କଲେ ସତ୍ୟନାରାୟଣ । ଆକାଶରେ ପକ୍ଷୀ ଯେସନେ କରେ ସଞ୍ଚରଣ । ସେହିପରି କୁମର ଯେ ଯାଉଅଛି ଉଡ଼ି । ପହଞ୍ଚିଲା କେବଳ ରାଜ ଅନ୍ତଃପୁରଧଡ଼ି । ରଙ୍ଗବତୀ କନ୍ୟାକୁ ଯେ ଦେଇଥିଲେ କଣ୍ଟା । ଗୃହଙ୍କ ପର୍ଯ୍ୟେ କନ୍ୟା ଶୁହିଁ ଥିଲା ବାଟ । ରତ୍ନଦୀପ ଜାଳି ହୋଇ ଅଛି ଉଜାଗର । ଭ୍ରମରବର ମିଳିଲା ପଲଙ୍କ ଉପର । ଦେଖିକରି ରଙ୍ଗବତୀ ଆନନ୍ଦ ହୋଇଲା । ଓଢ଼ଣା ଉହାଡେ ମଥା ପୋଛଣ କରିଲା । ସୌଦାଗର ବୋଲେ ଧନ କେତେ କରୁ ମାନ । ଭୃଗୁରାମ ଶରଚଲେ ରଖ ନାରାୟଣ । ରଙ୍ଗବତୀ କନ୍ୟାକୁ ଯେ ପଲଙ୍କେ ବସାଇ । ହାସ ରସ କଉତୁକେ ନିଶି ଗଲା ପାହି । କଥୋପକଥନେ ସାଧୁ ଆନନ୍ଦ ହୋଇଲା । ଭ୍ରମରବରକୁ ରଙ୍ଗବତୀ ପଚାରିଲା । ନ କହି ପ୍ରଭାତୁ ଶେଯୁ ଉଠି ପ୍ରାଣନାଥ । କେଣେ ଛାଡ଼ିଗଲ ମୋତେ କରିଣ ଅନାଥ । କୁମର ବୋଇଲା ଶୁଣ ତହିଁର କାରଣ । ଦଣ୍ଡର କଥା କହୁ ପିତା ପାଦେ ପଡ଼ନ୍ତେଣ ॥ ସେ କାରଣ ଲେଖିଦେଇ ଦୁଆର-ବନ୍ଧରେ । ରାଜ ନ ପାଇଣ ଗଲି ଦେଶାନ୍ତରେ । ରଙ୍ଗବତୀ ବୋଇଲା ହେ ଶୁଣ ପ୍ରାଣନାଥ । ଲଜ୍ଜାପୁଷ୍ପ ପରି ମୋତେ ଛାଡ଼ିଯିବ କାନ୍ତ । ମାଲତୀ କୁସୁମ ପରି ହେବ ଲାଗେ ବ୍ୟଥା । ଏ ନବ ଯୌବନ ଯିବ ତୁମ୍ଭଲାଗି ବୃଥା ତୁମ୍ଭେ ପ୍ରାଣନାଥ ଯେବେ ଯିବ ବିଦେଶରେ । ଯଦି ପୁନି ଜନ୍ମହେବ କି ବୋଲିବି କାରେ । ଗର୍ଭରେ ବାଳକ ହେଲେ ହେବ କଲଙ୍କସା । ଠାଇ ଠାଇ ପରା କହିବେ ଏ ସାହି ପଡ଼ିଶା । ପିତା ତୁମ୍ଭର ଜାଣିଲେ ବୁଡ଼ାଇବେ ଜଳ । ଗର୍ଭେ ଶିଶୁ ଜାତ ଯଦି ହୋଇବ ମୋହର ॥ ଭ୍ରମରବର ବୋଇଲା ଶୁଣ ହୋ ସୁନ୍ଦରୀ । ସ୍ୱବ-ର୍ଣ୍ଣର ହାର ମୋର ରଖ ଯତନରେ ॥ ଯେବେ ତୋତେ ପଚାରିବେ ହେବୁ ବାହାର । ଚନ୍ଦ୍ରମୁଖୀ ଦେବୁ କହି ନାମ ଧରି ମୋର ॥ ଚଳା ରତ୍ନମାଳା ଫେରାଇ କନ୍ୟାହସ୍ତେ ଦେଲା । ମେଲାଣି ମାଗିଣ ସାଧୁ ବାହାର

Digitized by PPRACHIN, SOA

ହୋଇଲା । ସେଠାରୁ କୁମର ଗଲା ପୂର୍ବ ପରକାରେ । ପ୍ରବେଶ ହୋଇଲା ଶଙ୍ଖହ୍ରଦ ପାଟଣାରେ । ରଙ୍ଗବତୀ କନ୍ୟା ସୁଖେ ମନ୍ଦିରେ ରହିଲା । କହୁଁ କହୁଁ ଛଅମାସ ଗର୍ଭ ଉପୁଜିଲା । ଦିନେ ରଙ୍ଗବତୀ ଅଛି ଆପଣା ମନ୍ଦିରେ । ଚାରିଯାଅ ଯାଇଁ ମିଳିଗଲେ ତା ପାଶରେ । ଚାରିକନ୍ୟା ବୋଇଲେ ଯେ ଶୁଣ ଗୋ ସୁନ୍ଦରି । ଆସ ଆସ ସଙ୍ଗ ହୋଇ ଯିବା ସ୍ନାନ କରି । ସଙ୍ଗହୋଇ ଯମୁନାରେ କରିବା ସ୍ନାହାନ । ଶୁଣି ରଙ୍ଗବତୀ କନ୍ୟା କରିଲା ଗମନ । ସୁଗନ୍ଧ ଅଯୁଁଳା ଘେନି ଚଳିଲା ସୁନ୍ଦରୀ । ବାହାରିଲେ ପାଞ୍ଚଯାଅ ହୋଇ ଧରାଧରି । ଯମୁନା ନଈରେ କନ୍ୟା କରିଲେ ସ୍ନାହାନ । ସ୍ନାନ ସାରି କୂଳକୁ ଆଇଲେ ପାଞ୍ଚଜଣ । ଅଙ୍ଗରୁ ଓଦା ବସନ ପାଲଟିଲା ବେଳେ । ରଙ୍ଗବତୀ ଗର୍ଭ ଦେଖିଲେ ଯେ ତେତେବେଳେ । ଦେଖି କନ୍ୟା ଗର୍ଭହେବା କଲେ ଯେ ବିଚାର ଗର୍ଭେ ପୁଏ ଥିଲାପରି ଦିଶୁଛି ଏହାର । ଚାରିକନ୍ୟା ବୋଇଲେ ଗୋ ଶୁଣ ରଙ୍ଗବତୀ । ସତ କହ କାହାସଙ୍ଗେ କରିଛୁ ପୀରତି । ରଙ୍ଗବତୀ ବୋଇଲା ମୁଁ କହୁଅଛି ସତ୍ୟ । ଏକଦିନେ ମୋହପୁରେ ଆସିଥିଲେ କାନ୍ତ । ସେହିଦିନୁ ଗର୍ଭବାସ ହୋଇଛି ମୋହର । ସଙ୍କେତ ଦେଇ- ଅଛନ୍ତି ସେ ସୁବର୍ଣ୍ଣହାର । ନାସୂମ କରୁଛି ମୁହିଁ ମିଛ ନ କହଇ । ଚାରିଯାଅ ତାହାର ଯେ ହୋଇଲେ ମୃଦେଇ । ସ୍ନାନ ସାରି ପାଞ୍ଚଜଣ ପହଞ୍ଚିଲେ ଘରେ । ଶାଶୁ ଆଗେ ଚାରିଯାଅ କହିଲେ ଗୁପ୍ତରେ । ଶୁଣ ସାଧବାଣୀ ଶୁଣ ଆମ୍ଭର ଉତ୍ତର । ଦୋଚାରୁଣୀ ସାନବୋହୂ ହୋଇଲା ତୁମ୍ଭର । ସାନବୋହୂ କାହାସଙ୍ଗେ କଲା ଯେ ପୀରତି । ଗର୍ଭେ କାହ୍ନୁଁ ପାଞ୍ଚମାସ ହେଲା ରଙ୍ଗବତୀ । କେଉଁ ମହାଜନ ସଙ୍ଗେ ପ୍ରୀତି କଲା ସେହି । ସୁବର୍ଣ୍ଣର ହାର ଗୋଟି ଦେଇଛି ଜଡ଼ାଇ । ଏହା ଶୁଣି ସାଧ- ବାଣୀ ବେଗେ ଗଲା ଧାଇଁ । ଧନ୍ଦ ସୌଦାଗର ଆଗେ କହିଲା ବୁଝାଇ । ଶୁଣ ଶୁଣ ସୌଦାଗର ଶୁଣ ମୋ ଉତ୍ତର । ଦୋଚାରୁଣୀ ସାନବୋହୂ ହୋଇଲା ତୁମ୍ଭର । ସାନବୋହୂ କାହାସଙ୍ଗେ କରିଅଛି ପ୍ରୀତି । ଗର୍ଭେ ପାଞ୍ଚମାସ କାହ୍ନୁଁ ହେଲା ରଙ୍ଗବତୀ । ଧନଲୋଭେ ପୁଅକୁ ଯେ ଘରୁ

Digitized by PPRACHIN, SOA

ଛଡ଼ି ଦେଲା । ପାଞ୍ଚ ପଚାଶରେ ଏବେ ନାହା ଯେ ପାଇଲା । ସୌଦାଗର ବୋଲେ ତାକୁ ନ ରଖ ମନ୍ଦିରେ । ଜାତିକୁଳ ହରାଇଲା କାହା ସଙ୍ଗତରେ । ଘରୁ ଦିଅ ଘଉଡ଼ାଇ ନ ଚାହିଁବା ମୁଖ । ଶୁଣି ରଙ୍ଗବତୀକନ୍ୟା କରୁଅଛି ଶୋକ । ସତ ମିଛ କହି ଘରୁ ଦେଲେ ଘଉଡ଼ାଇ । ବନସ୍ତ ଭିତରେ କନ୍ୟାପଡ଼ିଲାଯାଇଁ । ବନସ୍ତରେ ବୁଲିକନ୍ୟହୋଇଛି ଅକୁଳ । କାନ୍ଦି କାନ୍ଦି କନ୍ୟା ମେଲେ ଗଉଡ଼ଗୋଷ୍ଠର । ଗଉଡ଼ଗୋଷ୍ଠରେକନ୍ୟା ବସିଣକାନ୍ଦଇ । କନ୍ୟାକୁ ଦେଖି ମଗ୍ରେ ସୁବାହୁ ପଚାରଇ । କହ କାହାଁ ରୋଦନ କରୁଛୁ ଚନ୍ଦ୍ରମୁହିଁ । ଏହା ଶୁଣି ରଙ୍ଗବତୀ ବଚନ କହଇ । ରଙ୍ଗବତୀ ବୋଲେ ଯାହା କରଛୁ ବିଧାତା । ମୁହିଁ ତୋର ଧର୍ମଝିଅ ତୁହି ମୋର ପିତା । ଶୁଣି ଆନନ୍ଦ ହୋଇଲା ସୁବାହୁ ପଚାରଇ । ଧର୍ମଝିଅ କରି ଘରେ ରଖିଲାକ ନେଇ । ରଙ୍ଗବତୀ ରହିଲାକ ଗଉଡ଼ ଗୋଷ୍ଠରେ । କହୁଁ ୨ ସାତମାସ ହୋଇଲା ଗର୍ଭରେ । ବୋଲେ କନ୍ୟା ହେ ମଉସା ଶୁଣ ମନ ଦେଇ । ନାନାଜାତି ସ୍ୱାଦୁଦ୍ରବ୍ୟ ଆଣିଦିଅ ତୁହି । ତାହା ଶୁଣି ପଚାରଇ ଯେ ବେଗେ ଚଲିଗଲା । ନାନାଜାତିସ୍ୱାଦୁଦ୍ରବ୍ୟମାନ ଆଣି ଦେଲା । ସ୍ୱାଦ ଖାଇ ରଙ୍ଗବତୀ ଆନନ୍ଦ ହୋଇଲା । ଦଶମାସ ଦଶଦିନ ଯହୁଁ ପୂରିଗଲା । ଦଶମାସ ଦଶଦିନ ପୂରି ରଙ୍ଗବତୀ । ସତ୍ୟପୀର ଚରଣରେ ଲଗାଇଲା ମତି । ଯେସମାନେ ସତ୍ୟପୀର ଯେ କଥା ଜାଣିଲେ । ଗଉଡ଼ଗୋଷ୍ଠରେ ଆସି ପ୍ରବେଶ ହୋଇଲେ । ନାରାୟଣ ମିଳୁଁ ପୁତ୍ର ହୋଇଲା ଜନମ । ମୂର୍ଚ୍ଛାଗତ ହୋଇ କନ୍ୟା ହେଲା ଅଚେତନ । ପୀରଙ୍କ କୃପାରୁ କନ୍ୟା ହୋଇଲା ସଚେତ । ଉଠି ରଙ୍ଗବତୀ କନ୍ୟା ଦେଖିଲାକ ପୁତ୍ର । ଅନୁଡ଼ ଲଗାଇ କନ୍ୟା ପୁତ୍ରକୁ ସେକିଲା । ପଞ୍ଚୁଆତି ଷଷ୍ଠୀ ଉଠିଆରି ହୋଇଗଲା । ଏକଦିନେ ସତ୍ୟପୀର ସ୍ୱପ୍ନ ଚଉରେ । ଆସି ପ୍ରବେଶ ହୋଇଲେ ଗଉଡ଼ଗୋଷ୍ଠରେ । ରଙ୍ଗବଲ୍ଲଭ ନାମ ଯେ ଦେଇ ସେ ପୁତ୍ରର । ତହୁଁ ତ ଏନାରାୟଣ ହୋଇଲେ ଅନ୍ତର । କହୁଁ କହୁଁ ହୋଇଗଲା ଦ୍ୱାଦଶ ବତ୍ସର । ରଙ୍ଗବଲ୍ଲଭକୁ ପଢ଼ାଇଲେ ସତ୍ୟପୀର । ଦିନକେ

Digitized by PPRACHIN, SOA

ଓଡ଼ିଆପାଠ ସମ୍ପୂର୍ଣ୍ଣ ପଢ଼ିଲା । ଦ୍ୱିତୀୟ ଦିନେ ବଙ୍ଗଳାପାଠ ସେ ସାଧିଲା । ତୃତୀୟ ଦିନେ ପଢ଼ିଲା ପାରଶୀ ନାଗରୀ । ଚତୁର୍ଥଦିନେ ଚତୁର୍ଥପାଠ ପଢ଼ି-ଦେଲା ସାରି । ପାଠରେ ନିପୁଣ ହୋଇ ମାଧବ ନନ୍ଦନ । ଜାଣିଣ ତାହାକୁ ସୁଦୟା କଲେ ନାରାୟଣ । ରଙ୍ଗବତୀ ଦୁଃଖ ପ୍ରଭୁ ଫେଡ଼ିବେ ଏଥର । ଅବନ୍ତୀନଗରେ ଥିଲା ଏକ ନରବର । ଅଶୀ କୋଶ ଦୀର୍ଘପ୍ରସ୍ଥ କରଇ ରାଜୁତି । ଧନ ରତ୍ନେ ପୂର୍ଣ ନୃପତି ଯେ ଲକ୍ଷପତି । ବାରଲକ୍ଷ ହସ୍ତୀ ତାର ତେରଲକ୍ଷ ଘୋଡ଼ା । ପୁତ୍ର ଯେ ଦୁହିତା ନାହିଁ ଜନ୍ମ ଅଣ୍ଟୁକୁଡ଼ା । ଧନଞ୍ଜୟ ନାମ ତାର ଅଟେ ବଳବନ୍ତ । ବ୍ୟାଧି ପୀଡ଼ା କଲା ଯେ ଘୋଟିଲା ବାତପିତ୍ତ । ଚାକର ନଫର ପାତ୍ର ମନ୍ତ୍ରୀ ଛତ୍ର ଘେର । ବାନ୍ଧି ନେଲେ ଯମଦୂତେ ପ୍ରାଣ ଗଲା ସରି । ପାତ୍ର ମନ୍ତ୍ରୀ କାନ୍ଦନ୍ତି ଅବର ପରଜା । ଅଶୀକୋଶ ରାଜ୍ୟରେ ଯେ କେ ହୋଇବ ରାଜା । ଏତେବୋଲି ଘୋଷଣା ଯେ ଦେଲେ ପାତ୍ର ମନ୍ତ୍ରୀ । ହସ୍ତୀପରେ ସୁବର୍ଣ୍ଣ କଳଶ ବୁଲାବନ୍ତି । ରଙ୍ଗବଲ୍ଲଭ ଯେ ଥିଲା ଗଉଡ଼ଗୋଷ୍ଠରେ । ସୁବର୍ଣ୍ଣ କଳଶ ହସ୍ତୀ ଢାଳିଲା ତା ଶିରେ । ରଙ୍ଗବଲ୍ଲଭ ଆଗରେ ବାଜେ ଖାରବାଜା । ଅବନ୍ତୀନଗରେ ସାଧୁ ହୋଇଲେକ ରାଜା । ଦେଖିକରି ରଙ୍ଗ-ବତୀ ଆନନ୍ଦ ହୋଇଲେ । ଶଙ୍ଖହ୍ରଦ ପାଟଣାରେ ସୌଦାଗର ଥିଲେ । ଅସମାନେ ମାୟା କଲେ ସତ୍ୟନାରାୟଣ । ପାଞ୍ଚଭାଇ ଏକଦିନେ ଦେଖିଲେ ସ୍ୱପନ । ସ୍ୱପନ ଦେଖନ୍ତେ ସାଧୁ ହେଲେ ଉନମତ୍ତ । ମାଗି ଦେଇଦେଲେ ଯେ ଜାହାଜ ଗୋଟା ସାତ । ଯେ ଯାହାର ଇଚ୍ଛା ରୂପେ ପଦାର୍ଥ ଘେନିଲେ । ଆପଣା ଦେଶକୁ ସାଧୁମାନେ ଚାଲିଗଲେ । ଚତୁର୍ଥ କନ୍ୟା ଘରେ ଯେ ପାଇଲେ ଶୁଣାଶୁଣି । ସୌଦାଗର ଜାଣିଲେ ଶୁଣିଲା ସାଧବାଣୀ । ସାଧବାଣୀ ହୋଇଲା ସୁଭାଗ୍ୟ ମୋହର । ଚାରିବୋହୂ ସଙ୍ଗେ ଭେଟ ହୋଇଲା ବାହାର । ଜାହାଜ ଉପରେ ବସିଛନ୍ତି ପାଞ୍ଚ-ଭାଇ । ଅର୍ଘ୍ୟଥାଳୀ ଭେଟ ବନ୍ଦାପନା କଲେ ଯାଇଁ । ଯେଣୁ ପଞ୍ଚ ବେଶ ଯୁବତୀମାନେ ଚଢ଼ିକରି । ସଙ୍ଖୋଳିକଲେ ସେମାନଙ୍କୁ ବନ୍ଦାପନା କରି । ଗୌରବ କରି କନ୍ୟାଏ ଘେନିଗଲେ ଘରେ ।

Digitized by PPRACHIN, SOA

ଭ୍ରମରବର ବସିଛୁ ଜାହାଜ ଉପରେ । ସାଧବାଣୀ ବୋଇଲାରେ ଶୁଣ ଯଦୁମଣି । କି ବିଚାର କରୁଅଛୁ ମନେ ତୋର ପୁଣି । ଜାହାଜ ଉପରୁ ବାପ ନ ଅସୁ କପାଇଁ । ଭ୍ରମର ବୋଇଲା ମୋର ରଙ୍ଗବତୀ କାହିଁ ସାଧବାଣୀ ବୋଇଲାରେ ଶୁଣ ତୁ ଭ୍ରମର । ରଙ୍ଗବତୀ କନ୍ୟାକୁ ଜଗାଇ ଅଛି ଘର । ଘରେ ରହିଅଛି କନ୍ୟା ଝୋଡେ ଝୁରି ଝୁରି । ରାଜାଝିଅ ଅଟଇ କେସ ଅସିବ କପଟଇ । ଭ୍ରମର ବୋଲଇ ମାଗୋ ଶୁଣ ମନ ଦେଇ । ରଙ୍ଗବତୀ ଦେଖିବି ଆସ ପରଦା ପକାଇ । ରଙ୍ଗବତୀ ରୂପ ନ ଦେଖିଲେ ମୁଁ ନମ୍ଭୁନେ । ଯେତେକଥା କହୁ ମାତ ବେଲବେହେଁ ନ ମାନେ । ରଙ୍ଗବତୀକି ଦେଖିଲେ ସ୍ଥିର ହେବ ମନ । ଏହା ଶୁଣି ସାଧବାଣୀ କହଇ ବଚନ । ବାଭୁ ହୋଇ ରଙ୍ଗବତୀ ଘରେ ଗଲୁ ଛାଡ଼ି । ଦୋଗିରୁଣୀ ହେଲା ସେତ ବାହାପଙ୍କେ ପଡ଼ି । ପାଞ୍ଚମାସ ଗର୍ଭ ହୋଇ ଘରେ । ରହିଥିଲା । ତୋର ପିତା ସେହି କଥା କର୍ଣ୍ଣରେ ଶୁଣିଲା । ମୋ କଥା ନ ମାନି ଘରୁ ଦେଲା ଘଉଡ଼ାଇ । ଚିତ୍ତ ସ୍ଥିର କର ପୁଣି ରଙ୍ଗବତୀ ନାହିଁ । ଏହା ଶୁଣି ଭ୍ରମର ଯେ ମୂର୍ଚ୍ଛିତ ହୋଇଲା । ରଙ୍ଗବତୀ ବୋଲି କାନ୍ଦି ଭୂମିରେ ଲୋଟିଲା । ସାଧବାଣୀ ବୋଇଲାରେ ଶୁଣ ତୁ ଭ୍ରମର । ରଙ୍ଗବତୀ ପାଇଁ ଅକା ଚିତ୍ତ ଅସ୍ଥିର କର । ରଙ୍ଗବତୀ ପାଇଁ ଅକ ନ ହୁଅ ତୁ ଲୋଭୀ । ରଙ୍ଗବତୀ ପରି କନ୍ୟା କରିଦେବି ବିଭା । ଏହା ଶୁଣି ଭ୍ରମର ଯେ ବୋଲେ ଶୋକ ଚିତ୍ତେ । ରଙ୍ଗବତୀ ପରି କନ୍ୟା ମିଳିବ କି ମୋତେ । ଏ ଧନ ସମ୍ପଦେ ମୋର କିଛି କାର୍ଯ୍ୟ ନାହିଁ । ରଙ୍ଗବତୀ ଲାଗି ଆଜ ଯିବି ଯୋଗୀ ହୋଇ । ମୁଣ୍ଡରୁ ପକାଇ ଦେଲା ସୁବର୍ଣ୍ଣପଗଡ଼ି । ଖଡ଼ୁ ନୋଳି ବୀରବଳି ପକାଇଲା କାଢ଼ି । ଗଳାରେ ବାନ୍ଧିଲା ସାଧୁ ରୁଦ୍ରାକ୍ଷର ହାର । ଧନ ରତ୍ନ ତ୍ୟାଗ କରି ହୋଇଲା ବାହାର । ଦେହର ବସନ ଚିରି ପିନ୍ଧି କଉପୁନ । କେନ୍ଦରା ବଜାଇ ସାଧୁ କାନ୍ଦଇ ବାହୁନ । ବୃକ୍ଷମୂଳେ ନଦୀକୂଳେ ବୁଲେ ଫେରି ଫେରି । ରଙ୍ଗବତୀ କେଉଁଣେଗଲୁ ମୋତେ ଏକାକରି । ଭ୍ରମର ଯା କହୁଥାଇ କେନ୍ଦରା ବଜାଇ । ଅବନୀ

Digitized by PPRACHIN, SOA

ନଗରେ ସାଧୁ ପହଁଞ୍ଚିଲା ଯାଇଁ ।। ଯେଉଁ ଦେଶେ ପୂର୍ବ ଦ୍ୱାର କରୁଛି ରାଜୁତି । ସେହୁ ଗ୍ରାମେ ଭିକ୍ଷା ମାଗି ବୁଲୁଥାଇ ନିତି ।। ଦକ୍ଷିଣପାରୁଶେ ଅଛି ରଙ୍ଗବତୀ ଘର । କେନ୍ଦରା ବଜାଇ ସାଧୁ ବସାଇଲା ସ୍ୱର ।। ସାତ ପାଞ୍ଚ ସ୍ତ୍ରିରୀମାନେ କହନ୍ତି ମେଲି । ରଙ୍ଗବଲ୍ଲଭ ତା ସଙ୍ଗେ ଶୁଣୁଛି ପଦ୍ୟଲ ।। ଭ୍ରମରବର ଗାଉଛି ପୂର୍ବ ହକକତ । ପୋଖରୀକୂଳରେ କନ୍ୟା କହିଥିଲା ସତ୍ୟ । ମୋ ପିତା ମୋ ପାଦେ ପଡ଼ି କଲା ନମସ୍କାର । ଏଥିଲାଗି ମୁହିଁ ଚଳି ଦୂର ଦେଶାନ୍ତର ।। ସଙ୍କେତ ମୁଁ ଲେଖିଚଲି ଏବୃଣ୍ଡିକନ୍ନରେ । ହେନେ ଘଟର ଅସିଥିଲି ଲୁଟିଣ ରାଓରେ ।। ସଙ୍କେତ ଦେଇଣ କନ୍ୟା ଘରେ ଗଲି ଛାଡ଼ି । ନ ସହିଲେ ଗୃହଯାଅ ଘରୁ ଦେଲେ ତଡ଼ି ।। ରଙ୍ଗବତୀ ଲାଗି ମୁଁ ଧରିଛି ଯୋଗୀବେଶ । ତାହାଲାଗି ପ୍ରାଣ ଯିବ ବୁଲି ଦେଶ ଦେଶ ।। ଶୁଣି ରଙ୍ଗବଲ୍ଲଭ ଯେ ବେଗେ ଗଲା ଧାଇଁ । ରଙ୍ଗବତୀ କନ୍ୟା ଆଗେ କହିଲା ବୁଝାଇ ।। ରଙ୍ଗବଲ୍ଲଭ ବୋଇଲା ଶୁଣସି ଗୋ ମାତ ! ଦାଣ୍ଡେ ବସି ଏକ ଯୋଗୀ ଗାଉଅଛି ଗୀତ ।। ରଙ୍ଗବତୀ ରଙ୍ଗବତୀ ବୋଲୁଛି ଉଣ୍ଡରେ । ଯୋଗୀ ଗୀତ ଶୁଣି ମାତ କେ ଧଇର୍ଯ୍ୟ ଧରେ ।। ରଙ୍ଗବତୀ ବୋଲେ ତାକୁ ଡାକିଆଣ ଯାଇଁ । ଯୋଗୀ ଗୀତ କପଟ ମୁଁ ହେନେ ଶୁଣି ନାହିଁ ।। ଶୁଣି ତା ରଙ୍ଗବଲ୍ଲଭ ଯାଇଁ ଅଛି ଖଟେ । ବୋଲେ ଯୋଗୀ ଆସ ତୁ ଗାଇବୁ ସିଂହଦ୍ୱାରେ ।। ବାହାର ହୋଇଲା ଶୁଣି ସେ ଭ୍ରମରବର ଝୁଲି ମୁଣି କେନ୍ଦରାକୁ ପକାଇ କାନ୍ଧର ।। ସିଂହଦ୍ୱାରେ ବସିଲା ଯେ ସେ ଭ୍ରମରବର । କେନ୍ଦରା ବଜାଇ ସାଧୁ ବସାଇଲା ସ୍ୱର ।। ରଙ୍ଗବଲ୍ଲଭ ଜଣାଏ କନକା ଛାମୁରେ । ଯୋଗୀ ଆସି ବସିଅଛି ଅମ୍ଭ ସିଂହଦ୍ୱାରେ ।। ତହୁଁ ରଙ୍ଗବତୀ କନ୍ୟା ବେଗେ ଚଳିଗଲା । ଝରକା ଉହାଡ଼େ ରହି ଯୋଗୀଙ୍କି ଦେଖିଲା ।। ଭ୍ରମରବର ଗାଉଛି ପୂର୍ବ ହକକତ । ଶୁଣି ରଙ୍ଗବତୀ କନ୍ୟା ହୋଇଲା ଚକିତ ।। ଏହାଠାରୁ କେମନ୍ତେ ମୁଁ ସଙ୍କେତ ପାଇବ । ଏ ଭ୍ରମରବର ବା ମୁଁ କେମନ୍ତେ ଜାଣିବ ।। ରଙ୍ଗବତୀ ବୋଲେ ଦାସୀ ତୁମ୍ଭେ ଗୋପନରେ । ବେଶ ହୋଇକରି ଯାଅ ସେ ଯୋଗୀ

Digitized by PPRACHIN, SOA

ପାଶରେ । ଯେବେ ଯୋଗୀ ରତିରଙ୍ଗ ହୋଇ ଅଛିଥିବ । ତୁମ୍ଭ ଦୁଇ ଜଣ ଏକ ବାଛୁ ଯେନଯିବ । ଆଜ୍ଞାପାଇ ଦୁଇ ଦାସୀ ତହୁଁ ଚଳିଗଲେ । ଚନ୍ଦନ ସିନ୍ଦୂରବନ୍ଧ ଭାଳରେ ଯେନଲେ । ଝମକ ଝୁଣ୍ଟିଆ ପାଦେ ଶବଦ କରଇ । ସିଂହଦ୍ୱାରେ ଦୁଇ ଦାସୀ ପହୁଞ୍ଚିଲେ ଯାଇ । ଯୋଗୀ ବସିକରି ତହିଁ ଗୀତ ଗାଉଥିଲା । ଏ ଦୁଇ କନ୍ୟାଙ୍କପରେ ତା ଦୃଷ୍ଟି ପଡ଼ିଲା । ଦେଖିକରି କୁମର ଯେ କରୁଛି ବିଚାର । ଏହି ଦୁଇ କନ୍ୟା ଯେ ସେ ନୃହନ୍ତି ମୋହର । ଏହି ଯେବେ ରଙ୍ଗବତୀ ମୋର ହୋଇ- ଥାନ୍ତା । ଫିଟିକଫୁଲ ମୁଣ୍ଡରେ ଚନ୍ଦ୍ର ଦିଶୁଥାନ୍ତା । ଏହି ଯେବେ ରଙ୍ଗ- ବତୀ ମୋର ହୋଇଥାନ୍ତା । ଧାନକୁଟି ଏହା ଗୋଡ଼େ ଫୋଟକା କି ଥାନ୍ତା । ତହୁଁ ଫେରି ଦୁଇଦାସୀ ବେଗେ ଚଳିଗଲେ । ରଙ୍ଗବତୀ କନ୍ୟା ଆଗେ ଯାଇ ଜଣାଇଲେ । ଦାସୀ ବୋଲେ ମହାରାଣୀ ଶୁଣ ମନ ଦେଇ । ଆମ୍ଭ ଦୁଇ ସଖିଙ୍କି ଆଦର କଲେ ନାହିଁ । ଏହା ଶୁଣି ରଙ୍ଗବତୀ ମନେ ବିଚାରଇ । ଆଜ ପ୍ରାଣନାଥ ସଙ୍ଗେ ଭେଟ ହେବି ମୁହିଁ ॥ ମୋହଲାଗି ପ୍ରାଣନାଥ ହୋଇଛନ୍ତି ଯୋଗୀ । ଗ୍ରାମେ ଗ୍ରାମେ ବୁଲୁଛନ୍ତି ଭିକ୍ଷା ମାଗି ମାଗି । ଆଜ ପ୍ରାଣନାଥ ସଙ୍ଗେ ଭେଟ ହେବି ମୁହିଁ ଅଧବୁଡ଼ୀ ହେଲି ଆସି ଚନ୍ଦ୍ରିବେ କି ନାହିଁ । ଏପରି ଭାଳଣି କନ୍ୟା ଆନନ୍ଦିତ ମନ । ଭୃଗୁରାମ ବିରଚିଲେ ରଖ ନାରାୟଣ ।

ଏଥିଅନନ୍ତରେ ଶୁଣ ରସ । ହେଲା ରଙ୍ଗବତୀ ବେଗେ ବେଶ ॥ ମନଭେଦ ଦର୍ପଣ କାଢ଼ିଲା । କନ୍ୟା ଯତନେ କେଶ ବାନ୍ଧିଲା ॥ ନାସା ଅଗ୍ରେ ଚଇତନ କଲା । ଦେଖି ପୁରୁଷେ ପଡ଼ିବେ ଭୁଲି । ବେନି ନୟନେ ମୋହନୀ କଜ୍ଜଳ କଲା କାଟିବ ପୁରୁଷ ଗଳା । କନ୍ୟା ମେଘ ଡମ୍ବରୁ କାଢ଼ିଲା । ତାକୁ ଯତନେ ହୃଡ଼ ପିନ୍ଧିଲା । ଦୁଇଦାସୀ ସଙ୍ଗ- ତରେ ନେଲା । କନ୍ୟା ନବରୁ ବାହାର ହେଲା । ଯୋଗୀ ବସିଥିଲା ସିଂହଦ୍ୱାରେ । କେନ୍ଦରା ବଜାଇଥିଲା ସ୍ୱରେ । ତୋହଲାଗି ହେଲି ଏତେ ଦୂର । ରଙ୍ଗବତୀ କେଉଁଣେ ଗଲୁ ମୋର । ଏହିକାଳେ ଯାଇଁ ରଙ୍ଗବତୀ । ପ୍ରବେଶ ହୁଅନ୍ତି ତାର କତି । ଯୋଗୀ କେନ୍ଦରା ଫୋପାଡ଼ି

Digitized by PPRACHIN, SOA

ଦେଲା । ଉଠିକରି ତାକୁ କୋଳକଲା । ରଙ୍ଗବଲ୍ଲଭ ଯେ ଦେଖୁଥିଲା । ଯୋଗୀ ମୁଖକୁ ଅନାଇ ଦେଲା ।। ବୋଇଲା ଅରେ ତୁ ଶୁଣ ଯୋଗୀ । କାଲି ଅସିଥିଲୁ ଭିକ ମାଗି ।। ନାଗପାଶ ମୁଣ୍ଡେ ହସ୍ତ ଦେଲୁ । ହସ୍ତେ ପ୍ରାଣରେ ତୁ ଅଛ ମଲୁ ।। ରଙ୍ଗବତୀ ମୁଖକୁ ଅନାଇ । ରଙ୍ଗବଲ୍ଲଭ ଝିଙ୍ଗାସି କହି ।। ଅଉ ମୁଖ ନ ଚାହିଁବ ତୋର । ଏବେ ଯାଅ ଯୋଗୀ ସଙ୍ଗତର ।। ରଙ୍ଗବତୀ ବୋଲେ ହେ କୁମର । ଏହି ନିଜ ବାପ ଅଟେ ତୋର । ପିତାଙ୍କୁ କର ତୁ ନମସ୍କାର । ପିତା କଲ୍ୟାଣ କରିବେ ତୋର ।। ଶୁଣି ରଙ୍ଗବଲ୍ଲଭ ଉଠିଲା । ପିତା ଚରଣ ତଳେ ଲୋଟିଲା । ପିତା ପୁତ୍ରେ ତହିଁ ଭେଟ ହେଲେ । ଭୃଗୁରାମ ଗୀତେ ବରଣିଲେ ।।

ରଙ୍ଗବତୀ ଦେଖି ଯୋଗୀ ହରଷିତ ମନ । ରଙ୍ଗବଲ୍ଲଭକୁ ଚାହିଁ ବୋଲନ୍ତି ବଚନ ଆଜ୍ଞାଦେଇ ନାପିତକୁ ବେଗେ ପଠାଇଲା । ଭ୍ରମରବରର କେଶ ବେଗେ ମୁଣ୍ଡାଇଲା । ତଇଲ ଗ୍ରହଣ କରି ସେ ଭ୍ରମର ବର । ଗଙ୍ଗାଜଳେ ସ୍ନାନ ସାରୁଁ ଦେଖି ତା କୁମର । ସୁଚିକ୍କଣ ବସନ ଆଣି ବାପୁ ପିନ୍ଧାଇଲେ । ପଞ୍ଚାମୃତ ଅଣାଇ ଭୋଜନ କରାଇଲେ । ଭୋଜନ ସାରଣ ସାଧୁ ଆନନ୍ଦିତ ମନ । ରଙ୍ଗବତୀ ମୁଖ ଚାହିଁ ବୋଲଇ ବଚନ ।। ବହୁତ ଦିନରେ ସଖି ଦେଖିଲି ମୁଁ ତୋତେ । ମନେ ପଡୁଥାଏ ଟିକି କହ ସଖି ମୋତେ ।। ଛଇଳାରମଣୀ ତୋର ନାହିଁ ଗୁଣସୀମା । ଯୁବତୀରତନକୁ ଗୋ ଅଛୁ ରାଜକେମା ।। ରଙ୍ଗବତୀ ବୋଲେ କାନ୍ତ ମୋତେ ଙ୍କ ଦୋଷରେ । ଛାଡିଣ ଯାଇଁ ରହିଲ ଦୂର ପ୍ରବାସରେ ।। ତୁମ୍ଭ ଗୁଣ ଗୁଣି ନେବେ ନ ରହଇବାର । ନ ସରଇ ଦିନ ନଖେ ମହୀ ଚିରି ।। ଏହିପରି କେତେ ଯେ ଦିବସ ବହିଗଲା । ଦିନେ ରଙ୍ଗବଲ୍ଲଭ ଯେ ମନ୍ତ୍ରୀଙ୍କୁ କହିଲା ।। ଶୁଣ ଅହୋ ମନ୍ତ୍ରୀବର ମୋହର ବଚନ । ବାପ ଥାଉଁ ପୁତ୍ର ରାଜା ନୁହଇ ବିଧାନ ।। ଏହା ଶୁଣି ମନ୍ତ୍ରୀବର ଆନନ୍ଦ ହୋଇଲା । ଭ୍ରମରବରକୁ ନେଇ ରାଜା କରାଇଲା ।। ଭ୍ରମରବରର ଆଗେ ବାଜନ୍ତି ବାରବାଜା । ଅବନ୍ତୀ ନଗରେ ସେହି ହୋଇଲେକ ରାଜା ।। ଦେଖି ତାହା ପାଟମାନେ ଆନନ୍ଦ ହୋଇଲେ । ଭ୍ରମରବର ଉପରେ ଛତ୍ର ଧରି-

Digitized by PPRACHIN, SOA

ଇଲେ । ଅପମାନେ ମାଗ୍ନା କଲେ ସତ୍ୟନାରାୟଣ । ଭ୍ରମରବର ଯେ ଦିନେ ଦେଖିଲା ସ୍ୱପନ ॥ ସ୍ୱପନ ଦେଖିଣ ସାଧୁ ହେଲା ଉନମତ୍ତ । ମାଲ ଭର ହେଲେ ଯେ ଜାହାଜ ଗୋଟା ସାତ । ମନ୍ତ୍ରୀଙ୍କୁ ରାଜା କରଣ ମୁଲକକୁ ଗଲେ । କଛୁଦିନେ ନିଜ ଦେଶେ ପ୍ରବେଶ ହୋଇଲେ । ଭ୍ରମରବର ଆସନ୍ତା ଡଗରେ କହିଲେ । ଶୁଣି କରି ବୁଢ଼ା ବୁଢ଼ୀ ଆନନ୍ଦ ହୋଇଲେ । ଅର୍ଘ୍ୟ ବନ୍ଧାପନା କରି ପୁଅବୋଲି ନେଲେ । ଆପଣା ମନ୍ଦିରେ ଯାଇଁ ପ୍ରବେଶ ହୋଇଲେ । ଭ୍ରମରବର ପଡ଼ିଲା ପିତାର ଚରଣ ଦେଖି ବୁଢ଼ା ବୁଢ଼ୀ ହେଲେ ଆନନ୍ଦିତ ମନ । ରଙ୍ଗବତୀ କହୁଅଛି ଶୁଣ ଗୋ ଜନନୀ । ଯାହାଲାଗି ମୋତେ ବନବାସ ଦେଲ ପୁଣି । ସେ ବାଳୁଙ୍ଗା ପଡ଼ିଅଛି ଘୁଙ୍କ ଲ୍ୟାଣ କର । ଶୁଣିକରି ସାଧବାଣୀ ହରଷ ଅନ୍ତର । ନାତିଙ୍କ କାଖରେ ନେଇ ବୁଢ଼ାପାଶେ ଗଲା । ନଅହେ ନାତିକ ବୋଲି ଆନନ୍ଦରେ ଦେଲା । ସାଧବାଣୀ କାଖେ ଯହୁଁ ନାତିଙ୍କ ଦେଖିଲା । ବୁଢ଼ା ବେଗେ କୋଳେ ନେଇ ମୁଖେ ଚୁମ୍ବ ଦେଲା । ଏହିରୂପେ ପିତା ପୁତ୍ରେ ଆନନ୍ଦେ ରହିଲେ । ସତ୍ୟପୀର ପୂଜା କରି , ଶିରଣି ବାଣ୍ଟିଲେ । ଶୁଣ ଜନେ ଏହିପରି ପିରଙ୍କ ମହିମା । ଦୃଢ଼ଭକ୍ତି କଲେ ପୂର୍ଣ୍ଣ ହୁଅଇ କାମନା । ବୁଢ଼ା ବୁଢ଼ୀ ପୁଅ ବୋହୂ ଆନନ୍ଦେ ରହିଲେ । ଶ୍ରୀକବିବଲ୍ଲଭ ଏହି ପାଲା ବିରଚିଲେ ॥ ଭୃଗୁରାମ ବୋଲି ଏହାଙ୍କର ଭିନ୍ନନାମ । ହରି ହରି ବୋଲ ପାଲା ହେଲା ସମାପନ ॥

ସମାପ୍ତ ।





କଟକ ବ୍ରଜେନ୍ଦ୍ର ପ୍ରେସରେ ଶ୍ରୀ ଚନ୍ଦ୍ରାମଣି ଦାସଙ୍କ ଦ୍ୱାରା ମୁଦ୍ରିତ

Digitized by PPRACHIN, SOA

ବିଜ୍ଞାପନ

ନୂତନ ପୁସ୍ତକ ! ନୂତନ !
ସଙ୍ଗୀତ ରସିକବନ୍ଧୁ

ମୂଲ୍ୟ ୦ ୵୬

ଅଜ କାଲି ଉସଭାଷାରେ ସଙ୍ଗୀତ ଭଣ୍ଡାର ଉଜ୍ଜ୍ୱଳ ପଡ଼ିଲାଣି ଆଉ ସ୍ଥାନ ନାହିଁ । ଲେଖକମାନେ ଯାଇ ତାଇ କରି ଗୀତ ଗୁଡ଼ିକ ଅନେକ ଅନ୍ୟଦେଶ ସ୍ୱରରେ ପୂର୍ଣ୍ଣ କରି ନିଜ ଦେଶର ସଙ୍ଗୀତ ସ୍ୱର ମାନଙ୍କୁ ଏକାବେଳକେ ଲୁଚାଇଲେଣି । ଏଥିପରି ପ୍ରତ୍ୟେକ ବିଷୟ କ୍ରମେ କ୍ରମେ ଏତେବେଳକୁ ବିଦେଶିଜନଙ୍କ ପର ଦ୍ୱାରେ ଭିକ୍ଷା ମାଗିଲେଣି, ତେବେହେଁ ନିଜ ଦେଶର ପୂର୍ବ ଗୌରବ ମନେ ପଡ଼ୁ ନାହିଁ । କେବଳ ପର କଥାରେ ଭୁଲିବ ପରଗୋଡ଼ରେ ବାଟ ଚାଲିବା ଏହାହିଁ ସ୍ୱତସିଦ୍ଧ ମନେକଲେଣି ଏହି ସମସ୍ତ ଭାବମାନ ଦେଖି ଶୁଣି କେବଳ ମାତ୍ର ଭାଇମାନଙ୍କୁ ଦେଖାଇବା ନିମନ୍ତେ କେତୋଟି ସଙ୍ଗୀତ ଏହି କ୍ଷୁଦ୍ର ପୁସ୍ତକରେ ପ୍ରକାଶ କଲି । ଇତି

ଶ୍ରୀ ଚିନ୍ତାମଣି ଦାସ ପ୍ରୋପ୍ରାଇଟର,
ବିଜେନ୍ଦ୍ର ପ୍ରେସ ଓ ପୁସ୍ତକାଳୟ ।
ପୋ, ଅ, କଟକ ।

Digitized by PPRACHIN, SOA